ଅଚ୍ୟୁତ ଦାସଙ୍କ ରଚିତ

# ଜ୍ଞାନପ୍ରଦୀପଗୀତା ।

(ଭକ୍ତିତନ୍ତ୍ର)

କଟକ ବାଲୁବଜାର ନିବାସୀ

ଶ୍ରୀ ଗୋବିନ୍ଦ ରଥଙ୍କ ଦ୍ୱାରା ସଂଶୋଧିତ ଓ ସ୍ଥାନେ୨

ପରିବର୍ତ୍ତିତ ହୋଇ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।



PRINTED BY S. N. MOHAMMAD

Shaikh Bazar at the Edward Press

CUTTACK

1910

[redacted]

# ଜ୍ଞାନପ୍ରଦୀପ ଗୀତା ।

କହଇ ଅର୍ଜୁନ ଶୁଣ ମହାପ୍ରଭୁ ବ୍ରହ୍ମଜ୍ଞାନ କହ ମୋତେ ।
ଏକାକ୍ଷର ବ୍ରହ୍ମ ଯାହାକୁ ବୋଲନ୍ତି ସେ ଅଛି କାହିଁ ଗୁପତେ । ୧ ॥
କହନ୍ତି ଶ୍ରୀକୃଷ୍ଣ ଶୁଣ ହେ ଅର୍ଜୁନ ମହାଶୂନ୍ୟ ଶୂନଂ ଜାତ ।
ଶୂନ୍ୟ ମଧ୍ୟକୁ ତୁ ଲକ୍ଷ୍ୟ କର ପାର୍ଥ ଅକାର ତହିଁ ସମ୍ଭୂତ । ୨ ।
ଅକାର ଅକ୍ଷର ବର୍ତ୍ତୁଳ କହନ୍ତେ ଉକାର ଜନମ ହୋଇ ।
ଉକାର ଅକାର ମିଶାଇଁ ବୁଝ ତୁ ଏକାକ୍ଷର ସେ ବୋଲାଇ । ୩ ।
ହ୍ରୀଁ ଅକ୍ଷରଟି ଶ୍ରୀଁ ସଙ୍ଗେ ଘେନ କ୍ଲୀଁ ତ୍ରିବିନ୍ଦୁବୀଜାକ୍ଷର ।
ଏହି ତ୍ରିବୀଜଟି ନାମ ବୋଲାଇଲା ଜନମ ସେହି ଅକ୍ଷର । ୪ ।
ହ୍ରୀଁ ବଳଭଦ୍ର ଶ୍ରୀଁ ସୁଭଦ୍ରା ଯେ କ୍ଲୀଁ ଜଗନ୍ନାଥ ଜାଣ ।
ଏହି ତ୍ରିବୀଜ ଖପି ଭବେ ରହିଛନ୍ତି ପାର୍ଥ ଏକ ଅଙ୍ଗେ ଜାଣ । ୫ ।
ହ୍ରୀଁ ବୀଜଟି ଯେ ବଂଶୀ ଠାବେଶ ଶ୍ରୀଁ ବୀଜଟି ହୃଦୟେ ।
କ୍ଲୀଁ ବୀଜ ଶିରେ ବିସ୍ତାର ହୋଇଲା ଏମନ୍ତେ ତ୍ରିବୀଜ କ୍ଷୟେ । ୬ ।
ବିନ୍ଦୁବୀଜ ବିନ୍ଦୁ ନାମ ବୋଲାଇଲା ତାଙ୍କ ଏକତ୍ର କର ।
ସୋମ ସୂର୍ଯ୍ୟାଗ୍ନି ମିଶାଇଁ ଏ ତ୍ରିକୂଟ ଉପରେ ହେତୁକୁ ଧର । ୭ ।
ତ୍ରିକୂଟ ସ୍ଥାନରୁ ଯେବଣ ସ୍ଥାନ ଦଶ ମିଶିଲେ ଦେଖ ଅର୍ଜୁନ ।
ତହିଁକି ସେ ଯୋଗୀ ଯୋଗ ଅଷ୍ଟାଙ୍ଗରେ ରହି କରୁଛନ୍ତି ଧ୍ୟାନ । ୮
ଯୋଗୀ ବୋଲି କର ଯାହାକୁ ବୋଲନ୍ତି ଯୋଗଦ୍ୱାରେ ଦ୍ୱାକ୍ଷୀ ସେହି
ଯୋଗୀଜନ ଯୋଗେ ପ୍ରବେଶ ହୁଅନ୍ତେ ମନ ଜ୍ଞାନକୁ ହରାଇ । ୯ ।
ଅଜପା ବୋଲନ୍ତି ଯେବଣ ସେ ମନ୍ତ୍ର ଜପିଲେ ଛାଡ଼ଇଁ ଦ୍ୱାର ।
ଦ୍ୱାର ଛାଡ଼ିଲେ ମହାଶୂନ୍ୟ ଦିଶିବ ତହିଁକି ତ ଲକ୍ଷ୍ୟ କର । ୧୦ ॥
ସେହି ଠାବରେ ତ୍ରିବିକ୍ରମ ରୂପ ଜଣା ସାକ୍ଷାତେ ଉଦୟ ହୋଇଁ ॥

ପାଦ ପାଣି କର୍ଣ୍ଣ ନାସା ଚକ୍ଷୁ ଜିହ୍ୱା ରେଖ ରୂପ ଯାର ନାହିଁ । ୧୧ ॥
ଅବ୍ୟକ୍ତ ବର୍ଣ୍ଣ ଅଶୂନ୍ୟ ରୂପ ଶୂନ୍ୟ ଅରୂପ ତାହାର ଦେହ ।
କୋଟି ଚନ୍ଦ୍ର କୋଟି ଅଗ୍ନି ତେଜ ରୂପ ତାର ରୂପକୁ ଗଞ୍ଜଇ । ୧୨ ॥
ଅଜ୍ଞାନଜନଙ୍କୁ ଅଦୃଶ୍ୟ ହୁଅଇ ସୁଜ୍ଞାନଙ୍କ ଦୃଶ୍ୟ ହୋଇ ।
ସ୍ଥାବରଜଙ୍ଗମ କୀଟ ପତଙ୍ଗରେ ଘଟେ ଘଟେ ପୂରିଛଇ । ୧୩ ।
ସଦ୍‌ଗୁରୁ ସେବା କରିଥିଲେ ଜାଣି ଅଜ୍ଞା ଥିଲେ ତାହା ପାଇ ।
ସାଧୁଜନଙ୍କ ବଚନକୁ ପ୍ରଖତ ଅନୁଭବ ହାପ କହଇ । ୧୪ ।

ଇତି ଶ୍ରୀ ଜ୍ଞାନପ୍ରଦୀପ ଗୀତାୟାଂ ସୁପନ୍ନାସସ୍ତୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।

---

ଦ୍ୱିତୀୟ ଅଧ୍ୟାୟ ॥

କହନ୍ତି ଅର୍ଜୁନ ଶୁଣ ଗୋସାଇଁ ।
ଅବ୍ୟକ୍ତପ୍ରକୃତି କାହିଁରେ ଥାଇଁ । ୧ ।
ଜୀବ ପରମ ବୋଲନ୍ତି ଯେ କାହିଁ ।
ଏହା ବୁଝାଇ କହ ଭବତାରୀ । ୨ ।
ପରମ ଦଶଇ କେବଣ ବର୍ଣ୍ଣ ।
ଜୀବର ବର୍ଣ୍ଣ ଯେ କେବଣ ପୂର୍ଣ୍ଣ । ୩ ॥
ଜୀବଗୋଟି କାହିଁ ରହିଲା କହ ।
ପରମ ହୋଇଛି କେବଣ ଦେହ । ୪ ।
ଏକା ଘଟରେ ଲୀଳା କରନ୍ତି ରହି ।
ଏମନ୍ତ ବୋଲି ସାଧୁମାନେ କହି । ୫ ।
ଶ୍ରୀହରି ବୋଲନ୍ତି ଶୁଣ ହୋ ପାର୍ଥ ।
ପଚାରିଲୁ ଯାହା ଅତି ଗୁପତ । ୬ ।
ଅଜ୍ଞାନୀଙ୍କ ବ୍ୟକ୍ତ କରିବୁ ନାହିଁ ।
ଅବ୍ୟକ୍ତ ପୁରୁଷ ଶୂନ୍ୟରେ ଥାଇ । ୭ ।

ଜୀବ ପରମ ତା ବେନି ଚରଣ ।
ଜୀବ ପରମ ମୁଁ ହୋଇଛି ଜନ୍ମ । ୮ ।
ହୋଇଛି ଅଶେଷ ପରମ ଚନ୍ଦ୍ର ।
ଜୀବ ପ୍ରକାଶ ଅଛି ସ୍ୱେତବର୍ଣ୍ଣ । ୯ ।
ବାମପାଦ ଜୀବ ରହିଛି ଟି ଏ ।
ଦକ୍ଷିଣପାଦ ପରମ ବିଜୟେ । ୧୦ ।
ଏକସ୍ଥାନେ ଲୀଳା କରନ୍ତି ବେନି ।
ପରମ ରହିଛି ଜୀବକୁ ଘେନି । ୧୧ ।
ଯାହା ପଚାରିଲ କହିଲି ପାର୍ଥ ।
ପରମ ତତ୍ତ୍ୱ ଯେ ଅତି ଗୁପତ । ୧୨ ।
କହଇ ଅର୍ଜୁନ ଶୁଣ ଶ୍ରୀହରି ।
ପଚାରୁଛି ଯାହା କହ ବିସ୍ତାରି । ୧୩ ।
ଜୀବ ପରମରେ ସନ୍ଦେହ ହେଲା ।
ମାତ୍ର କେ ଅସ୍ତିତ୍ୱ ଜଣା ନ ଗଲା । ୧୪ ।
ଜୀବ ପରମ ତ ଅଟନ୍ତି ଦୁଇ ।
ପୁଣ ବୋଲନ୍ତି ଏକ ରୂପ ସେହି । ୧୫ ।
ଶ୍ରୀହରି ବୋଲନ୍ତି ଶୁଣ ସବସି ।
ଗୁପତ ହୋଇଁ ଏ କଥା ରହିଛି । ୧୬ ।
ଜୀବଟି ମାତ୍ର ପରମ ଅସ୍ତିତ୍ୱ ।
ଜୀବରେ ପରମ କରେ ବିହାର । ୧୭ ।
ଅନଳ ଧୂମ ଯେସନ ପ୍ରକାର ।
ଜୀବ ପରମ ଏକଇଁ ଶରୀର । ୧ ।
ଶୁଣି ସେ ଜ୍ଞାନ ପୁଚ୍ଛିଲ ଅର୍ଜୁନ ।
ଜୀବ ପରମଙ୍କ କଳା ବିଧାନ । ୧୯ ।
କେତେ କେତେ କଳା ଶିବ ଦବପ ।

କେତେ କଳା ଯେନ ଗଢ଼ିଛ ହଂସ । ୨୦ ।
କେତେ ଦୁଆରେ କେତେ ବା କବାଟ ।
କେଉଁଠାରେ ସର୍ପ ଜଗିଛି ଘାଟ । ୨୧ ।
କେଉଁ ଦ୍ୱାର-ସେହି ନିରୋଧ ହୋଇ ।
କେଉଁ ଦ୍ୱାରରେ କବାଟ ଲାଗିଛଇ । ୨୨ ।
ଅନନ୍ତ ରହିଛି କେଉଁ ପ୍ରକାରେ ।
କେଉଁ ଦୀପ ଜଳେ କେଉଁ ଠାବରେ । ୨୩ ।
କହନ୍ତି ହରି ଶୁଣ ପଣ୍ଡୁବାଳା ।
ଜୀବ ପରମଙ୍କ ବତିଶ କଳା । ୨୪ ।
ଷବଶ କଳାରେ ସୂର୍ଯ୍ୟ ଦିବସ ।
ଅଷ୍ଟକଳା ଯେନ ନିତ୍ୟ ଯେ ବସ । ୨୫ ।
ଆହାର ନିଦ୍ରା ମଇଥୁନ ବାଣ ।
ଚନ୍ଦ୍ରର ଏ ଗୃହ କଳା ଅଟଇ । ୨୬ ।
ଊର୍ଦ୍ଧ ଧୂର୍ମ୍ମ ଜ୍ୟୋତି ଜ୍ୱାଳା ଏ ଗୃହ ।
ସୂର୍ଯ୍ୟକଳା ଗୃହ ଦ୍ୱାରେ ଚାହାସି । ୨୭ ।
ଏ ଗୃହ ଦ୍ୱାରେ ଏକ କବାଟହିଁ ।
ଦୋମୁହାଁ ସର୍ପ ତହିଁ ଜଗିଥାଇ । ୨୮ ।
ନିରୋଧ ଦ୍ୱାର ଅଟେ ଶିଷୁମ୍ନା ।
ତାଳ କବାଟ ଲଗିଅଛି ଅଜା । ୨୯ ।
ଯୋଗମାୟା ପରେ ଅନନ୍ତ ରହି ।
ମାଣିକ୍ୟଦୀପ ଯେଠାରେ ଜଳଇ । ୩୦ ।
ରାତ୍ରି ଦିବସ ଦୁଇ ନାହିଁ ଯହିଁ ।
କୋଟି ଦିବାକର ଉଦୟ ହୋଇ । ୩୧ ।
କହେ ଅର୍ଜୁନ ଶୁଣ ଦେବରାୟେ ।
ପୁଚ୍ଛିବି ମୁହିଁ ଅଦ୍ଭୁତ କଥାଏ । ୩୨ ।

କେମନ୍ତ ଅଟେ ସ୍ୱରୂପଟି ଯେହ୍ନ ।
କେମନ୍ତ ପ୍ରକାରେ ଶରୀର ବନ୍ଧ । ୩୩ ।
କେଉଁ ଜପ ତପ ମନ୍ତ୍ରରେ ଅଟେ ।
କାହାକୁ ଭାବିଲେ ତାଙ୍କୁ ପାଇବ । ୩୪ ।
କେଉଁ କଥା ଅଟେ ଅତି ଗୁପତ ।
କାହିଁ ବ୍ରହ୍ମାଣ୍ଡ ବା ହୋଇଛି ଜାତ । ୩୫ ।
ନାମଟି ଏ କାହୁଁ ଜାତ ହୋଇଲା ।
ସଂସାରରେ ପୁଣ ଉଦିତ ହେଲା । ୩୬ ।
ନାମଗୋଟି ସେ ଯେ କେମନ୍ତ ଭାବ ।
କର୍ତ୍ତୃ ତନ୍ତ୍ର ତା କେମନ୍ତ କହିବ । ୩୭ ।
କହନ୍ତି ଶ୍ରୀହରି ଶୁଣ ଅର୍ଜ୍ଜୁନ ।
ତୋତେ କହିବା ଏ ଗୁପତ ଜ୍ଞାନ । ୩୮ ।
ଭୁହ୍ନ ଯେ ପଚାର ଯାରୁ ଏମାନ ।
ଯାହା ନ ଜାଣନ୍ତି ଚତୁରାନନ । ୩୯ ।
ତୁ ପଚାରିଲୁ ସେ ରୂପ କେମନ୍ତ ।
କହୁଛି ଶୁଣ ତୁ ତଥି ତଦନ୍ତ । ୪୦ ।
ସ୍ଥୂଳ ନୋହେ ଶୂନ୍ୟ ନୋହେ ଅରୂପ ।
ଭକ୍ତ ଭକ୍ତିଭାବେ ବହନ୍ତି ରୂପ । ୪୧ ।
ବ୍ରତ ଜପ ତପ ମନ୍ତ୍ରେ ନ ପାଇ ।
ଭାବିଲେ ନାମ ଅନାମକୁ ପାଇ । ୪୨ ।
ଅତିଅଗୋଚର ଅନାମଖଣ୍ଡ ।
ଅବତାର ଯହିଁ କୋଟି ବ୍ରହ୍ମାଣ୍ଡ । ୪୩ ।
ଅନାମ ଖଣ୍ଡୁ ଜାତ ହୋଇ ନାମ ।
ସଂସାର ନାମରୁ ହେଲା ଜନମ ।
ଅତିଗୁପତ ଏ ନାମ ମହିମା ।

ବର୍ଣ୍ଣ ଚନ୍ଦ୍ର ଯାର ନ ଜାଣେ ବ୍ରହ୍ମା ।
ମୂଢ଼ଁ ବା କେଉଁ ଛାର ଲୋକ ହୋଇ ।
ମୂର୍ଖରେ ମୁଁ ଏହା କହିଁ ଲୋଡ଼ଇ ॥
ସାଧୁଙ୍କ କରୁଣା ଗୁରୁଙ୍କ ଆଜ୍ଞା ।
ମୋହର କାହିଁ ସେ ଏଡ଼େ ପ୍ରଜ୍ଞା ॥
ତୁଲ ଶୂନ୍ୟେ ନାହିଁ ପରମାନନ୍ଦ ।
ତାହା ଜାଣନ୍ତି ସେ ଭକତ ବୃନ୍ଦ ॥
ଭକତଜନ ପାଦ ଅରବିନ୍ଦ ।
ଧ୍ୟାୟି କର କହେ ଅଚ୍ୟୁତାନନ୍ଦ । ୪୯ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନ୍ଥସ୍ୟ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣଅର୍ଜୁନସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

ତୃତୀୟ ଅଧ୍ୟାୟ ।

କହନ୍ତି ଅର୍ଜୁନ ଶୁଣିମା ଶ୍ରୀହରି କହ ଜ୍ଞାନର ବିସ୍ତର ।
କେମନ୍ତ ପ୍ରକାରେ ଜ୍ଞାନର ମହିମା ଶୁଣିବାକୁ ମନ ମୋର । ୧ ।
ସ୍ୱରୂପେ ମନ୍ତ୍ର ଯେ ସ୍ଥାପନା ହୁଅଇ କେଉଁ ଛାର ତହିଁ ବସି ।
ଅଣଅକ୍ଷର ଯେ କାହାକୁ ବୋଲିବା ତାହା କହିବା ବିଶେଷି । ୨ ।
ଏକାକ୍ଷର ମନ୍ତ୍ର କେଉଁ ଅକ୍ଷର ସେ କେଉଁ ଠାବରେ ରହିଲା ।
ଏମନ୍ତେ ବାର ମାତ୍ରା ଅଷ୍ଟତ୍ରିଶ କେଉଁ ମନ୍ତ୍ର କାହିଁ ବସିଲା । ୩ ।
ଯନ୍ତ୍ରରେ ଯନ୍ତ୍ର ବେନି ଦଳ ବସଇଁ ସେ କାହୁଁ ହୋଇଲେ ଜାତ ।
କେଉଁ ଦଳୁ ଆତ୍ମା ସମ୍ଭୂତ ହୋଇଲା କହିବା ଏଥି ତତ୍ତ୍ୱ । ୪ ।
ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ କେଉଁ ଦଳରୁ ସେ ହେଲେ ।
ପ୍ରାଣାପାନ ବ୍ୟାନ ଉଦାନ ସମାନ କେଉଁ ଦଳୁଁ ଜନମିଲେ । ୫ ।
ପିଣ୍ଡିରସ୍ଥ ଗୁହ୍ୟଛାର ମୂଳ ବୀଜ କେଉଁ ଦଳରୁଁ ସେ ହୋଇ ।
ଅବନା ବୋଲନ୍ତେ ଅର୍କ ପାଇଲା କେତେ ଅକ୍ଷର ଅଟଇ । ୬ ।

କେଉଁ ଅକ୍ଷରୁ କେ କିରୂପେ ହୋଇଲା ଷୋଳଦଳ କାହୁଁ ହୋଇ ।
ଦ୍ୱାଦଶ ଦଳ କିରୂପେ ଜନମିଲା ତାହା କହ ଯଦୁସାଇଁ । ୭ ।
ଦଶଦଳ ବୋଲି କାହାକୁ କହନ୍ତି ସେ କେଉଁ ଦଳୁଁ ଉତ୍ପତ୍ତି ।
ଛଅଦଳ ଚତୁର୍ଦ୍ଦଳ କେଉଁ କ୍ଷରୁ କହ ଦାଶରଥି । ୮ ।
କେ କାହୁଁ କିରୂପେ ଜନମ ହୋଇଲେ କହ ଆଦ୍ୟ ଅନ୍ତ କରି ।
ଷଡ଼ଚକ୍ରେ ପ୍ରଣ୍ଣାଶରିର ପବନ ମନ କିରୂପେ ବହଇ । ୯ ।
ଅଷ୍ଟାଙ୍ଗଯୋଗ ଗୁରୁବେଦ ଓଁକାର ଏକାକ୍ଷର ଅଣାକ୍ଷର ।
ସଂକ୍ଷେପେ ଏହା କହନ୍ତ ମହାବାହୁ ଯେବେ ମୁଁ ଭୃତ୍ୟ ତୁମ୍ଭର । ୧୦ ।
ମୁହିଁ ହୀନଜନ ନାହିଁ ମୋର ଜ୍ଞାନ ଏ ସବୁ ପାଇବି କାହିଁ ।
ତୁମ୍ଭେ ଗୁରୁ ମୋତେ ସୁଦୟା କରି ଯେ ଶୁଣି ଭବୁଁ ଉଦ୍ଧରଇଁ । ୧୧ ।
କହନ୍ତି ଶ୍ରୀକୃଷ୍ଣ ଶୁଣ ହୋ ଅର୍ଜୁନ ତୋ ଆଗେ କହୁଛି ମୁହିଁ ।
ପୁଚ୍ଛିଲୁ ତୁ ଯାହା କହିବି ମୁଁ ତାହା ନ କହିବୁ ଅଜ୍ଞାନେହିଁ । ୧୨ ।
ବିଷମ ସନ୍ଧି ସେ ଅତି ଅଗୋଚର ବଚନେ ଜନାନ୍ତେ ବଖାଣି ।
ଯାହା ପଚାରିଲୁ ମନ୍ତ୍ରର ମହିମା ଶ୍ରୀଗୁରୁ କହିଲେ ଜାଣି । ୧୩ ।
ହେତୁ କରି ଶୁଣ ପ୍ରଥମ ଯନ୍ତ୍ରକୁ ସ୍ଥାପନ ଏମନ୍ତେ ହେଲା ।
ଅଣଅକ୍ଷର ଶୂନ୍ୟରୂପେ ତହିଁ ଯେ ପାରୁଷେ ଅକାର ହେଲା । ୧୪ ।
ଅକାର ପାରୁଷେ ଗାର ବସାଇଲେ ଆକାର ଯେ ତହିଁ ଦେଇ ।
ତହିଁ ପାରୁଶରେ ଶୂନ୍ୟ ବସାଇଲେ ଯେତୁରୂପେ ଯନ୍ତ୍ର ହୁଅଇ । ୧୫ ।
ତହିଁ ତଳେ ଗୁରୁଅଙ୍କ ଗାର ଓରେ ମାତ୍ରା ଅଗ୍ରପାଶେ ଦେଇ ।
ଉପରେ ସେ ମାତ୍ରା ବସାଇଲେ ଏକାକ୍ଷର ଷୋଡ଼ଶଦଳ ହୋଇ । ୧୬ ।
ବେନଦଳ ବୋଲି ଯାହା ସେ ବୋଲନ୍ତି ତେବୁ କରି ଭାଷ୍ଟା ହେନ ।
ସେହୁ ଠାବରୁଟି ଜ୍ଞାନ ସେ ଉତ୍ପତ୍ତି କହିଲି ତୋତେ ଅର୍ଜୁନ । ୧୭ ।
ହଂ କ୍ଷଂ ବୋଲିଣ ନାମଟି ଯାହାର ସେ ବେନଦଳ ବୋଲାଇ ।
ଉଦେ ଅସ୍ତ ଯେଉଁ ଠାବରେ ହୁଅଇ ଜ୍ଞାନଟି ସେହି ଅଟଇ । ୧୮ ।
ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ କହିବା ଏଥୁ ବିଧାନ ।

ହଂ ଦଳରୁ ଏ ପ୍ରକାଶ ହୋଇଲେ ଶୁଣ ତୁ ହୋ ଅରଜୁନ । ୧୯ ।
ପ୍ରାଣାପାନ ବ୍ୟାନ ଉଦାନ ସମାନ ଏ ଜ୍ଞାନ କହିବା ତୋତେ ।
ଯଂ ଦଳରୁ ଏ ଜନମ ହୋଇଲେ ଶୁଣ ତୁ ହୋ ପଣ୍ଡୁସୁତେ । ୨୦ ।
ଅନ୍ତର ତୋତେ କହିବା ଯେ ସୁତତ୍ତ୍ୱେ ଗୃହବେଦର ବଗୃର ।
ଗୃହବେଦ ମଧ୍ୟେ ପୃର ପ୍ରକାଶିଲୁ ଅଷ୍ଟାଙ୍ଗ ହି ନାମ ଯାର । ୨୧ ।
ପିରରଜ ବୋଲି ଯାହାକୁଟି କହି ଜାଣିଥିବି ବେଦଯରୁଁ ।
ପ୍ରଣବବଦ ବୋଲି ଏ ଗୃହଅକ୍ଷର କହିଲି ରସ୍ତୁ ଅକ୍ଷରୁ । ୨୨ ।
ଏବେ କହିବା ତା ଶୁଣନ ହୋ ପାର୍ଥ ଷୋଳଦଳର ବଗୃର ।
ଯେଉଁ ଦଳରୁ ଯେ ଜନମ ହୋଇଲେ ଯେନ ନାମ ରୂପାକ୍ଷର । ୨୩ ।
ଅଆ ଇଈ ଉଊ ଋୠ ବୋଲି ପାର୍ଥ ଏ ଆଠକ୍ଷର ବୋଲାଇଁ ।
ଌୡ ଏଐ ଓଔ ଅଂ ଅଃ ଟି ଆଦ୍ୟ ଯେ ଏହେ ଷୋଳଦଳ ହୋଇ । ୨୪ ।
ଦ୍ୱାଦଶ ଦଳର ମହିମାଟି ଶୁଣ ଷୋଳ ଦଳରୁ ଜନ୍ମଇ ।
କ ଖ ଗ ଘ ଟି ଯେ ଜାଣ ଙ ଚ ଛ ଜ ଅକ୍ଷର ପ୍ରମାଣ ଏହି । ୨୫ ।
ଅଆ ଇଈ ଉଊ ଋୠ ଯା ବୋଲନ୍ତି ଅଷ୍ଟ ଅକ୍ଷର ଏ ସ୍ଥିତି ।
ଏ ଅଷ୍ଟଅକ୍ଷରୁ ଯେ ଷଡ଼ ଅକ୍ଷର କହିଲୁଁ ସୁଭଦ୍ରାବସି । ୨୬ ।
ଆଉ ଷଡ଼ାକ୍ଷର ମହିମାଟି ଶୁଣ ଛ ଜ ଝ ନାମ ବୋଲାଇ ।
ଞ ଟ ଠ ଏ ଷଡ଼ ଅକ୍ଷର କହିବା ତୋତେ ହୋ ପାର୍ଥ ବୁଝାଇ । ୨୭ ।
ଌୡ ଏଐ ଓଔ ଅଂ ଅଃ ଅଷ୍ଟାକ୍ଷର ଏହି ସ୍ଥିତି ଯେ ପ୍ରମାଣ ।
ଛ ଜ ଝ ଞ ଟ ଠ ଏ ଷଡ଼ ଅକ୍ଷର ଜାତ ଅଷ୍ଟାକ୍ଷରୁ ପୁଣ । ୨୮ ।
ଦଶ ଦଳ ବୋଲି ଯାହାକୁ ବୋଲିଟି ଜନ୍ମ ଦ୍ୱାଦଶ ଦଳରୁ ।
ଡ ଢ ଣ ତ ଥ ଯାହା କହି କ ଖ ଗ ଘ ଙ ଚ ଛ ଯେ ତହୁଁରୁ । ୨୯ ।
ଆଉ ପାଞ୍ଚାକ୍ଷର ଦ ଧ ନ ପ ଫ ଟି ନିଶ୍ଚୟ କରି ତୁ ଜାଣ ।
ଷଡ଼ ଛ ଝ ଞ ଟ ଠାରୁ ଜନମ ଯେ ଏ ପାଞ୍ଚାକ୍ଷର ପ୍ରମାଣ । ୩୦ ।
ଷଡ଼ଦଳ ବୋଲି ନାମଟି ଯାହାର ଦଶ ଦଳରୁ ଯେ ଜାତ ।
ଡ ଢ ଅଣ ତ ଥଅରୁ ଯେ ବ ଭ ମ ହୋଇଅଛନ୍ତି ସମ୍ଭୂତ ॥

ଯ ର ଲ ଭିନ୍ନ ଯେ ଅକ୍ଷର ଦ ଧ ନ ପ ଫ ରୁ ହୋଇଲେ ଜାତ ।
ଚତୁର୍ଦ୍ଦଳ କଥା ବିଶେଷି କହିବା ଷଡ଼ଦଳରୁ ନିର୍ଗତ ॥
ବଂ ଅ ଶ ବୋଲି ଯେ ଏ ତିନି ଅକ୍ଷର ବ ଭ ମ ରୁ ଜାତ ହେଲେ ।
ଷ ସ ବେନି ଅକ୍ଷର ଯାହାକୁଟି କହ ଯ ର ଲରୁ ଜନମିଲେ ॥
ଷଡ଼ଚକ୍ରେ ପଞ୍ଚାଶ ଅକ୍ଷର ମନପବନ ସୁଷୁମ୍ନା ଦ୍ୱାର ।
ଅଷ୍ଟାଙ୍ଗ ଯୋଗ ଯେ ବେଢ଼ି ରହିଅଛି ଚତୁର୍ବେଦ ମଧ୍ୟେ ସାର ।
ଚତୁର ବେଦ ମଧ୍ୟେ ଓଁକାର ବୀଜ ସେ ଶିରେ ସେ ନା ଅର୍ଦ୍ଧମାତ୍ରା ।
ଅର୍ଦ୍ଧମାତ୍ରା ପରେ ବିନ୍ଦୁବ୍ରହ୍ମ ବସେ ତାଙ୍କୁ ବୋଲି ବ୍ରହ୍ମସ୍ଥା ॥
ବିନ୍ଦୁକୁ ବେଢ଼ି ବଙ୍କନାଳ ରହିଛି ବଙ୍କନାଳ ବୋଲି ଯାକୁ ।
ତ୍ରିବେଣୀ ଘାଟ ସେହିଠାରେ ଅଛଇ ଲକ୍ଷ୍ୟ କର ପାଅ ତାକୁ ॥
ବିନ୍ଦୁ ଉପରେ ଜ୍ୟୋତି ରୂପ ପ୍ରକାଶ ଜ୍ୟୋତିକି ନାମ କହି ।
ନାମ ଉପରେଟି ଅନାମ ରହିଛି ଏପରେ ପଦାର୍ଥ ନାହିଁ ॥
ଅତି ଅଗୋଚର ବିଷମ ହେବୁ ଯେ ଯେ ମହାନୁଭବେ ଦୃଶ୍ୟ ।
ଶ୍ରୀଗୁରୁ ବଚନ ହୃଦପଦ୍ମେ ଧୋଷି ମୁଦ୍ରନେ ଜାଗ୍ରତେ ବସ ॥ ୩୯ ।
ଶ୍ରୀଗୁରୁ କୃପାରେ ଯେ ଜ୍ଞାନ ସ୍ଫୁରଣ ହୃଦେ ଥାଇଁ ଧ୍ୟାନ୍ତ କହ ।
ବାଇ ପ୍ରାପ୍ତେ ହୋଇଁ ଏହା ମୁଁ ବୁଝଇ ଏତେ ହେଲୁ ମୋର କାହିଁ ।
ସାଧୁଜନେ ମୋର ଦୋଷକୁ ନ ଧର ମୁଁ ତୁମ୍ଭ ଦାସର ଦାସ ।
ବିଷୟଜାଳରେ ବନ୍ଧ ହୋଇ ରହିଛି ବାଜି ଛଣାଇ ଜାଲପାଶ ॥
ମୋ ମନହିଁ ମୋତେ ଆସୁରୀ କୋହିଲା ଭ୍ରମୁଛି ସଙ୍ଗତେ ପଡ଼ି ।
ଏକାଦଶ ଇନ୍ଦ୍ରୀ ବଶ କରୁଅଛି ତେଣୁ ମୁଁ ସ୍ୱଗତ ଛାଡ଼ି ॥
ଅଚ୍ୟୁତ ଦାସ ମୁଁ ଅତି ଅଜ୍ଞାନହିଁ ମୂର୍ଖ ମୂର୍ଖ ସଙ୍ଗେ ସର ।
ଲଭି ନ ପାରିଲି ଶ୍ରୀଗୁରୁ ପଦ୍ମରେ କେମନ୍ତେ ହୋଇବ ପାର ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

——o——

## ଚତୁର୍ଥ ଅଧ୍ୟାୟ ।

ଶ୍ରୀହରି ଚରଣ ଧରି ପଚାରଇ ପାର୍ଥ ।
ଅବ୍ୟକ୍ତ ବୋଲାଇ ରୂପ କାହିଁ ହେଲା ଗୁପ୍ତ । ୧ ।
ସ୍ୱରୂପ କରଣ ମୋତେ କହିବା ବିସ୍ତାରି ।
ଯେମନ୍ତେ ମନକୁ ପ୍ରତେ ପାଇବ ଶ୍ରୀହରି ।। ୨ ।
ନାମ ରୂପ ଦୁଇ ମୋତେ କହିବା ଭେଦାଇ ।
ତୋହର ପାଦପଦ୍ମ ବିନୁ ଅନ୍ୟ ଗତି ନାହିଁ । ୩ ।
ଶ୍ରୀହରି ବୋଇଲେ ଯାହା ପୁଚ୍ଛିଲୁ ଅର୍ଜୁନ ।
ଅବ୍ୟକ୍ତ ଗୁପତ ଏ ବୋଲାଇ ବ୍ରହ୍ମଜ୍ଞାନ । ୪ ।
ସଂସାର ଭିତରେ ଯେତେ ଦେଖୁଛୁ ସ୍ୱରୂପ ।
ଜ୍ୟୋତି ରୂପେ ନାମ ତହିଁ ହୋଇଅଛି ଗୁପ୍ତ । ୫ ।
ରୂପକୁ ବେଢ଼ିଣ ନାମ ଲୀଳା କରୁଅଛି ।
ଶେଷ ରୂପକୁ ନାମ ଯେ ଗମ୍ଭୀର ଧରୁଛି । ୬ ।
ସେ ରୂପଟି ଅଣାକାର ଅବ୍ୟକ୍ତ ଅଟଇ ।
ଯେଉଁ ରୂପରୁ ଅଶେଷ ବର୍ଣ୍ଣ ଝରୁଛଇ । ୭ ।
ନାମ ନାମ ଉଚ୍ଚାରନ୍ତେ ମନା ମନା ହେଲା ।
ଏଣୁକରି ନାମେ ରୂପ ମିଶିଣ ରହିଲା । ୮ ।
ନାମକୁ ଯେ ଧରିଥିବା ଯାଏ ଦେହ ଥାଇଁ ।
ନାମ ବିଭିନ୍ନ ହୋଇଲେ ରୂପ ଥିବ କାହିଁ । ୯ ।
ଅର୍ଜୁନ ବୋଇଲେ ପ୍ରଭୁ ଶୁଣ ବାସୁଦେବ ।
ପୁଚ୍ଛିବ କଥାଏ ମନୁ ସଂଶୟ ଫେଡ଼ିବ । ୧୦ ।
ନାମରୁ କି ରୂପ ଯେ କି ରୂପୁଁ ନାମ ହେଲା ।
ଏ ଦୁଇକଥାରେ ମୋତେ ସନ୍ଦେହ ଲାଗିଲା । ୧୧ ।
ଶ୍ରୀହରି କହିଲେ ଆହେ ଧନଞ୍ଜୟ ଶୁଣ ।
ସଂଶୟ ଛୁଟାଇ ତୋତେ କହୁ ଦେବା ଜ୍ଞାନ । ୧୨ ।

ଆଗହୁଁ ଯେ ନାମ ଥିଲା ରୂପକୁ ଗଢିଲା ।
ରୂପର ଭିତରେ ନାମ ପୂଣ ପ୍ରକାଶିଲା । ୧୩ ॥
ନାମକୁ ଚହ୍ନିଲେ ସିନା ରୂପକୁ ଜାଣିବ ।
ରୂପ ନ ଥିଲେଣ ନାମ କାହିଁ ଭଣାଇବ । ୧୪ ।
ନାମ ରୂପ ଧରି ରୂପ ଉହ୍ଲସ୍ତ ଜଗତେ ।
ସଂଶୟ ଫିଟାଇ ପାର୍ଥ କହ ଦେଖି ତୋତେ । ୧୫ ॥
ଅଲେଖ ରୂପରେ ଯୋଗମାୟା ଶକ୍ତିଘରେ ।
ବଳେ କର ମହାଉଦ୍ଧି ମଧ୍ୟେ ଲୀଳାକରେ । ୧୬ ।
ପୁଣି ପଚ୍ଚରଇଁ ପାର୍ଥ ଶିରେ କର ଦେଇଁ ।
କେତେ କଳା ଯେନ ନାମ ଉଦେ ହୋଇଥାଇଁ । ୧୭ ॥
କାହୁଁ ନାମ ଉପୁଜିଲା ରୂପ କାହୁଁ ହେଲା ।
ଏ ଦୁଇ କଥାରେ ମୋତେ ସନ୍ଦେହ ପଡ଼ିଲା । ୧୮ ।
ଅର୍ଜୁନକୁ ଶ୍ରୀହରି ଯେ କହନ୍ତି ବଚନ ।
ଜହଲ ଯେତେ ଏ ସବୁ ଏଥିର ବଧାନ । ୧୯ ।
ଅନାଙ୍ଗରୁ ନାମ ଗୋଟି ହୋଇଲା ଜନମ ।
ଅନାମ ଅଟଇ ଯେ ପରମ ଶୂନ୍ୟଧାମ ॥
ଷୋଳକଳା ଯେନ ନାମ ଉଦୟ ହୋଇଲା ॥
ବାରକଳା ଯେନଣ ସଂସାରେ ବିହରିଲା ॥
ଆଉ ଚଉକଳା ଅନ୍ତସାକ୍ଷ ହୋଇଁ ରହି ।
ଶବ୍ଦ ଗନ୍ଧ ରୂପ ରସ ଏ ଚାରି ମିଶାଇଁ । ୨୨ ।
ଚାରିବେଦ ମଧ୍ୟରେ ଯେ ବର୍ଜିଲି ନାମ ।
ଚତୁର୍ଭୁଜ ଧରି ତହିଁ କରନ୍ତି ବିଶ୍ରାମ । ୨୩ ।
ହଂସ ଖେଳ ନାମ ସେହୁ ଭାଷଇ ଶବଦ ।
ଗୋଚର ଇନ୍ଦ୍ରିରେ ଥାଇଁ କର୍ମେନ୍ଦ୍ରିରେ ଭେଦ ।୨୪।
ନାମର ମହିମା ପାର୍ଥ ଅତି ଅଗୋଚର ।

ହେବୁ କର ମୃତ୍ୟୁଞ୍ଜୟ ହେଲେଟି ଶଙ୍କର ।୨୬।
ହେବୁ ନ କରଣ ବ୍ରହ୍ମା ତେଣୁ ହୋଏ ନାଶ ।
ନାମ ବ୍ରହ୍ମ ଚର ଚର ପୂର ଚତୁର୍ଦ୍ଦଶ । ୨୭ ।
ମନକୁ ଅମନ ଯେବେ କରପାରୁ ବୁଦ୍ଧ ।
ଅବିଦ୍ୟା ମଧ୍ୟେ ପୂରିଛୁ ତଳେ କର ଶୁଦ୍ଧ । ୨୭ ।
ଅର୍ଜୁନ ବୋଇଲେ ପ୍ରଭୁ ଲଗିଲା ସନ୍ଦେହ ।
ମନ ଅମନ କେମନ୍ତେ ହୋଏ ତାହା କହ । ୨୮ ।
ଶ୍ରୀଧର ବୋଇଲେ ତୁ ଯା ପୁଚ୍ଛିଲୁ ଅର୍ଜୁନ ।
କହୁଛି ଶୁଣରେ ଏହା ଚିତ୍ତ କରି ଧ୍ୟାନ । ୨୯ ।
ଚଳ ଶକ୍ତି ଚଞ୍ଚଳ ଏ କଳ୍ପନାଦି କହି । ୦
ଖେଳୁଅଛି ମନ ତୁଅଇ ମନୁଷ୍ୟକୁ ଅବୋଧ । ୩୦ ।
ନିର୍ବିକଳ୍ପ ନିର୍ମ୍ମୋହ ଯେ ସ୍ଥିରଚିତ୍ତ ହୋଇ ।
ମହାନନ୍ଦୀ ହେଲେ ମନ ଅମନ ବୋଲାଇ ।।
ତୁ ମୋହର ଜୀବଆତ୍ମା ମୁଁ ତୋର ପରମ ।
ତେଣୁ କହୁଅଛି ତୋତେ ଜ୍ଞାନରସ ମର୍ମ ।।
ଶୁଣିକରି ଅର୍ଜୁନ ହୋଇଲେ କୃତ କୃତ ।
ନଷ୍ଟଚିତ୍ତ ହୃଷ୍ଟଚିତ୍ତ ହୋଇଲ ମୁକତ ।।
ତୁମ୍ଭର ଦର୍ଶନେ ଦେହ ଥାଉଁ ମୁକ୍ତ ହୋଇ ।।
କୋଟି କଳ୍ପାନ୍ତରେ ଯୋଗୀ ଜାଣି ନ ପାରନ୍ତି ।
କହିଲ ମୁଁ ଯେତେ ତୋତେ ଜ୍ଞାନ ପରସଙ୍ଗ ।
ଲୁଚିଲେଣି ମୁକ୍ତି ପାଅ ମିଶିଲେଣି ସଙ୍ଗ ।।
ସାଧୁ କରି ସିଦ୍ଧି କଲେ ଅଜାମର ହୋଇ ।
ଜଗନ୍ନାଥ ସେବଣ ଯେ ଅଚ୍ୟୁତ କହଇ ।।
ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପ୍ରଣିପସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ ।

ଶ୍ରୀହରି ବୋଲନ୍ତି ଶୁଣ ଅର୍ଜୁନ । ମହାନ୍ତ ଆଶ୍ରେ କଲେ ହୋଏ ଜ୍ଞାନ ॥
ସଂସାରଯାକରେ ପୂର୍ବ ମହାନ୍ତ । ତାର ତହୁଁ ଏ ସୃଷ୍ଟି ଆଦିକାନ୍ତ । ୧ ।
ଅର୍ଜୁନ ବୋଇଲେ ଭୋ ଜଗନ୍ନାଥ । କାହାକୁ ସେ ପୁଣ ବୋଲି ମହାନ୍ତ ॥
କାହିଁ ଅଛନ୍ତି ସେ କେମନ୍ତ ଜନ । କାହୁଁ ସେ କେମନ୍ତେ ହେଲେ ଉତ୍ପନ୍ନ ॥
କହନ୍ତି ହରି ଶୁଣ ପଣ୍ଡୁ ଶିଷ୍ୟ । ମହାଶୂନ୍ୟରୁ ମହାନ୍ତ ପ୍ରକାଶ । ୨ ।
ଅଶେଷ ବର୍ଣ୍ଣ ମହାନ୍ତ ଧଇଲା । କଳ୍ପଣାରୁ ଏ ସୃଷ୍ଟି ଜାତ କଲା ।୨ ।
ସ୍ଥାବର ଜଙ୍ଗମ କୀଟାଦି କରି । କରୁଛନ୍ତି ଲୀଳା ସୃଷ୍ଟିକି ଆବୋରି । ୭ ।
ମହାନ୍ତ ରହନ୍ତି ଯୋଗକୁ ହୋଇ । ଯୋଗରେ ସିନା ମହାନ୍ତକୁ ଚିହ୍ନି ॥
ଯୋଗପୁରୁଷ ମୁଖୁଁ ପଞ୍ଚବେଦ । ପଞ୍ଚଭୂତ ପଞ୍ଚବେଦରେ ଭେଦ ॥
ଯୋଗରୁ ଜନ୍ମ ଅମ୍ବିକା ମହିମା । ଅଯୋନିସମ୍ଭୂତ ଯେଉଁ ପ୍ରତିମା ॥
ସେ ଭବଦ୍ୱାର ନାହିଁ ଅବକାର । ଦେଖି ମହା ପୁରୁଷ ଚମତ୍କାର ॥
ଅଙ୍ଗୁଷ୍ଠି ହୋଇ କାଟି ଭବଦ୍ୱାର । ତହୁଁ ଜାତ ବ୍ରହ୍ମା ବିଷ୍ଣୁ ଶଙ୍କର ॥
ଏରୂପେ ତ୍ରିଗୁଣ ହେଲେ ସଂଜାତ । ଏଥୁଁ ଜନ୍ମିଲା ଅଶେଷ ଜଗତ ॥
ଶୁଣିଲୁ କି ପାର୍ଥ କହିଲି ତୋତେ । ଆଉ କଥା ଥିଲେ ପଚାର ମୋତେ ॥
ଶୁଣି ଅର୍ଜୁନ କୃତ କୃତ ହୋଇ । ଆଉ ଏକ କଥା ଏ ପଚାରଇ ॥
ପଞ୍ଚ ବେଦ କଥା କହିଲ ମୋତେ । ସେ ପୁଣ କାହିଁ ରହିଲା ଗୁପତେ ॥
ଚାରିବେଦ ପୁଣ ରହିଲା କାହିଁ । କେ କାହାକୁ କେଉଁ ଠାବରେ ଥାଇ ॥
ଶ୍ରୀହରି କହନ୍ତି ଶୁଣ ବରଷି । ଗୁପତ ହୋଇ ଚାରିବେଦ ଅଛି ॥
ତୋତେ କହିବା ପଞ୍ଚବେଦ କଥା । ତାହା ସେ ଜାଣନ୍ତି ଯେ ପଞ୍ଚମଥା ॥
ପଞ୍ଚବେଦ ପାର୍ଥ ଯାହାକୁ କହି । ମହାନ୍ତ ଯୋଗପୁରୁଷ ଟି ସେହି ॥
ହାତ ନୋହିବାରୁ ସେ ଅନ୍ତର୍ହିତ । ଉର୍ଦ୍ଧ୍ୱମୁଖେ ଯୋଗ ସାଧିଇ ତହିଁ ॥
ଏବେ ଶୁଣ ଚାରିବେଦ ଆଖ୍ୟାନ । ତାହା ଜାଣନ୍ତି ଚତୁର ବଦନ ॥
ଚାରି ବେଦ ଚାରି ବଦନେ ଭୁଞ୍ଜି । ବ୍ରହ୍ମଗାୟତ୍ରିକି ତହିଁରେ ଛନ୍ଦି ॥
ନମସ୍କାର ବ୍ରହ୍ମ ଏମନ୍ତ କଲେ । ଚାରିବେଦ ବ୍ରହ୍ମାଙ୍କୁ ସମର୍ପିଲେ ॥

ବେଦ ଯେନ ବ୍ରହ୍ମା ପାଞ୍ଚିଲା ଛନ୍ଦ । କର୍ମେ ଅଛ ଯୋଗ ସଂସାରବନ୍ଧ ।
ଚାରି ଯୁଗରେ ରହିବ ମହିମା । ଅପୂଜା ହେବୁ କଳିଯୁଗେ ବ୍ରହ୍ମା ।
ନିରାକାର ବ୍ରହ୍ମ ଏମନ୍ତ ଭଣି । ତୋ ଆଗେ କହିଲି ପଣ୍ଡୁର ଶିଷି ।
ପୁଣି ପଚାରଇ ପାଣ୍ଡୁ କୁମର । କାହିଁରେ ଯୋଗୀ ଲୟ ସୂନ୍ୟଧାର ।
ଏହା କହିବା ମୋତେ ମହାବାହୁ । ଶୁଣିକରି ମୋର ସଂଶୟ ଯାଉ ।
ଶ୍ରୀହରି କହନ୍ତି ଯୋଗ ବିଚାର । ଯେଉଁ ଯୋଗରୁ ଏ ସଚରାଚର ।
ଏ ଯୋଗ ଅବ୍ୟକ୍ତ ଅଟଇ ବୀର । ଏହା ଜାଣେ ଭକ୍ତଯୋଗୀ ମୋହର ।
ଏହି ବ୍ରହ୍ମଯୋଗ ଲୟ ସୂନ୍ୟରେ । ଜାଗି ରହି ଯୋଗୀ ଖେଳେ ଶୂନ୍ୟରେ
ଏହି ଯୋଗ ଅଶ୍ରେ କଲେ ହୋ ବୀର । କର୍ମବନ୍ଧରୁ ହୋଇବ ନିସ୍ତାର ॥
ଶ୍ରୀଜଗନ୍ନାଥ ଶ୍ରୀମୁଖ ବଚନ । ଜ୍ଞାନପ୍ରଦୀପ ଏ ଗୀତା ଲଖନ ।
ଶ୍ରୀଜଗନ୍ନାଥ ପାଦଅରବିନ୍ଦ । ଧ୍ୟାଇଣ କହଇ ଅଚ୍ୟୁତାନନ୍ଦ ।୩୫।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟଂ ସୁପନ୍ନପସୂ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣଅର୍ଜୁନ ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ ।

କହଇ ଅର୍ଜୁନ ଶୁଣ ଦାଶରଥି କଥାଏ କହିବି ତୋତେ ।
କିରୂପେ ଏ ସୃଷ୍ଟି କାହୁଁ ଜାତ ହେଲା ଆଜ୍ଞା ଦେବ ନାଥ ମୋତେ ।୧।
ମର୍ତ୍ତ୍ୟପୁର ବୋଲି କାହାକୁ କହନ୍ତି ସଂଶୟ ହୋଇଲା ମୋର ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ କେ କହ କେଉଁ ପ୍ରକାର ।୨।
କହନ୍ତି ଶ୍ରୀହରି କହିବା କଥାର ଶୁଣ ତୁ ହୋ ପଣ୍ଡୁସୁତ ।
ନିରାକାର ବ୍ରହ୍ମ ଶ୍ରୀଅଙ୍ଗ ମଳରୁ ମେଦାସୁର ହେଲା ଜାତ ।୩।
ସେହି ଅସୁରକୁ ମାରି ମହାପ୍ରଭୁ ମେଦମେଦା ଉଆଇଲେ ।
ହାଡ଼ ତା ପ୍ରାଣ ପୃଥିବୀ ମାଂସ ପୁଣ ମୁହିଁ ଗୃହଦାଗ ହେଲେ ।୪।
ମେଦାସୁର ମଳ ମହୀ ବୋଲାଇଲା ମୁକ୍ତାରେ ବନ୍ଧିଲେ ପ୍ରାଣୀ ।
ମହୀବାରୁ ମର୍ତ୍ତ୍ୟପୁର ବୋଲାଇଲା କହିଲି ତୋତେ ବଖାଣି ।୫।

ଅର୍ଜୁନ ବୋଇଲେ ଶୁଣ ମହାପ୍ରଭୁ ଲାଗିଲା ମୋତେ ସନ୍ଦେହ ।
ପୃଥ୍ୱୀତ ନ ଥିଲା ଜନ କାହିଁ ଥିଲା ଏହା ମୋତେ ନାଥ କହ ।୬।
ଶ୍ରୀହରି ବୋଲନ୍ତି ଶୁଣ ତୁ ତପସ୍ୱି ମହାବାହୁ କଲ୍ପଣାରୁ ।
ଏକା ନଶ୍ୱାସକେ କୋଟି ଅବତାର ହେଲେ ଗଜ କାଷ୍ଠଠାରୁ ।୭।
ପ୍ରଥମେ ମହାପ୍ରଭୁଙ୍କ ନଜକାଯ୍ୟାରୁ ସେ ବ୍ରହ୍ମା ହେଲେ ଜାତ ।
ସୃଷ୍ଟି ସର୍ଜନାକୁ ଗୃହିବେଦ ଘେନି ତ୍ରିଗୁଣେ ବାନ୍ଧି ଜଗତ ।୮।
ବିଷ୍ଣୁ ପାଳିତ ଗୁଣକୁ ଘେନି ଜାତ ହେଲେ ବଣ୍ଠବାସ ହୋଇ ।
ବଣ୍ଠ ବିନାଶ କରିବା ଗୁଣହେତୁ ଘେନି ରୁଦ୍ରନାମ ବହି ।୯।
ଅର୍ଜୁନ ବୋଲଇ ଶୁଣିମା ଭୋଳାନାଥ ରହିଣ କହ ତଦନ୍ତ ।
ଆପେ ଜାତକଲେ ଆପଣେ ପାଳିଲେ ଆପେ ନାଶିଲେ କେମନ୍ତ ।
କହନ୍ତି ଶ୍ରୀହରି ଶୁଣ ତଥଂକରି ଶିବମନ୍ତ୍ର ପଞ୍ଚବେଦ ।
ଜୀବରୂପରେ ସଚରାଚର ସେ ଯେ ବ୍ୟାପିଲା କହିଲୁଁ ଭେଦ ।୧୧।
ଯହୁଁ ଜନମିଲା ତହିଁରେ ରହିଲା ଗଲେ ରହିବ ସେଠାଇଁ ।
ଶୁଣିମାକୁ ପିନା ଐଶ୍ୱର୍ଯ୍ୟ ଲାଗୁଛି ବୁଝିଲେ ଅବୋଧ ନୋହି ।୧୨।
ଏ ଗୃହ ବେଦ ସଂସାର ଆଚରିଲେ କର୍ମବନ୍ଧକୁ ସେ ଘେନି ।
କାହୁଁ ଅଇଲା ଏ କାରୁ ସେ ରହିଛି କର୍ମବନ୍ଧନକୁ ଘେନି ।୧୩।
ପଞ୍ଚଦେବ ସେ ଯେ କୁଣ୍ଡଳିନୀ ବୋଲି ମହାଶକ୍ତି ନାମ ତାର ।
ତ୍ରିପୁର ପୀଠ ସେ ବାଠ କରିଛଇ ହୋମୁଁ ହା ସର୍ପ ଘହିଁର ।୧୪।
ସେହିଠାରେ ଉଦେ ଅସ୍ତ ପୂର୍ବଗିରି ତହିଁ ଶୃଙ୍ଗ ଏକଅଙ୍ଗ ।
ଗିରିଶୃଙ୍ଗ ପରେ ମାନସରୋବର ତହିଁ ଯେବେ ହେବୁ ସଙ୍ଗ ।୧୫।
ମାନସରୋବରେ ତା ତଡ଼ପାଶରେ ଅବିନା ଫୁଲ ଫୁଟିଛି ।
ଅଷ୍ଟ ପାଖୁଡ଼ାରେ ସେ ଫୁଲ ନିର୍ମାଣ ତଳେ କର ହୋ ତପସି ।୧୬।
ସେହି ସରୋବର ମଧ୍ୟେ ଦ୍ୱୀପଦଣ୍ଡି ତଥିପରେ ଚକ୍ର ସାଜେ ।
ତହିଁପରେ ଅନ୍ଧଧୃତ ବାନା ଉଡ଼େ ଯହିଁ ବିଜେ ଦେବରାଜେ ।୧୭।
ଅର୍ଜୁନ ଶୁଣି କୃତକୃତ ହୋଇଲା ପୁଛଇ ସେ ଜ୍ଞାନସୀମା ।

କାହିଁ କରୁପେ ବଜସ୍ରେ କର ଅବା ଦେବାଧିଶାକ ମହିମା । ୯ ।
ଅର୍ଜୁନ ଉଦାର ବଚନ ଶୁଣିଣ କହନ୍ତି ସ୍ୱରୂପ ବାଣୀ ।
ନୀଳକନ୍ଦ ମଧ୍ୟେ ରତ୍ନସିଂହାସନ ତହିଁ ବସେ ଚକ୍ରପାଣି । ୧୯ ।
ଗରୁଡ଼ଖମ୍ବ ପାରୁଶେ ଉଭା ହୋଇ ଚାହିଁଲେ ଶ୍ରୀମୁଖ ଦଶି ।
ଚତୁର୍ବାହୁରୂପ ଚାରକଳା ଯେଉଁଣ ଚଉଦ ଭୁବନ ପ୍ରକାଶି । ୧୦ ।
ଯହିଁରେ ଗାୟତ୍ରୀ ପାବନ୍ତ ହୋଇଛି ଚାରିବେଦ ଚାରିଦ୍ୱାର ।
ଯୋଗମାୟା କୋଳେ କାଳକମଳରେ ଜ୍ୟୋତିବନନ୍ଦ ବିହାର ।
ଇଁଅଳା ପିଁଅଳାକୁ ଅସ୍ଥିର କର ଶିଖୁମୁନାଦ୍ୱାରେ ମିଶି ।
ଗିନ ସିନ୍ଧୁ ମଧ୍ୟେ ଅନନ୍ତ ଶଯ୍ୟାରେ ଦେଖିବୁ ଲୁ ବ୍ରହ୍ମବଶି । ୧୧ ।
ଏହିରୂପେ ଚତୁର୍ଦ୍ଦଶ ଭୁବନରେ ପୂରି ପ୍ରକାଶିଛି ରହି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଚାରିଖାନ ଅଛେ ସେହି । ୧୩ ।
ବୈଷ୍ଣବ ଛଡ଼ି ନିର୍ମଳ ଆତ୍ମା ଯାର ତାକୁ ଏ ଜ୍ଞାନ ଅମୃତ ।
କୁଟିଳ ଲମ୍ପଟୀ ଦାମ୍ଭିକ କପଟୀ ସେମାନଙ୍କୁ ବିଷକୃତ । ୧୪ ।
ତୁ ଯେଣୁ ମୋହର ଜୀବଆତ୍ମା ପାର୍ଥ ତେଣୁ ମୁଁ କହିଲି ତୋତେ ।
ଗୁରୁ ଗୁପ୍ତବାଣୀ ତୋତେ ଯେ କହିଲି ଅଭ୍ୟାସ କର ଯେସନ ଚିତ୍ତେ । ୧୫
ତୋହର ଦେହ ଯେ ତୋତେ ଜ୍ଞାନଭାଣ୍ଡ ତହିଁ ଦେଖ ଲୁହ ମୁହିଁ ।
ଆଉ କ କହିବି ଏକଭାବେ ଭାବ ଏଥୁ ଜ୍ଞାନ ଆଉ ନାହିଁ । ୧୬ ।
ପାର୍ଥ ଶୁଣିକରି ସଂଶୟ ତୁଟିଲା ଚିତ୍ତରେ ହୋଇ ଆନନ୍ଦ ।
ଅଚ୍ୟୁତପାଦପଦ୍ମକୁ ଆଶ୍ରେ କରି କହଇ ଅଚ୍ୟୁତାନନ୍ଦ । ୧୭ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପ୍ରନୀପସ୍ୟ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ ।

ଶ୍ରୀକୃଷ୍ଣ ମୁଖକୁ ଅର୍ଜୁନ ଚାହିଁ । ବିନୟ ଭାବେ କୃତାଞ୍ଜଳି ହୋଇ ।
ବ୍ରହ୍ମପ୍ରଳୟ ହେଲା ଯେତେବେଳେ । ସବୁ ସଂହରିଲ କାରୁଣ୍ୟଜଳେ ।

ଅବର କଥାଏ କହ ଶ୍ରୀହର । ଲୁଚାଇଁ ଅଛ ଯହିଁ ଗୋପ୍ୟ କର ॥
ସେ କଥା ନାମ କହ ଦେବମୋତେ । ତେବେ ମୋ ମନେ ପାଇବ ପରତେ
ବ୍ରହ୍ମପ୍ରଳୟ ଯେ ହୋଇଣ ଗଲା । ସକଳ ଜୀବ ଜନ୍ମ ନାଶ କଲା ॥
ଦଶଲକ୍ଷ ଯୋଜନ ଅଡ ପର୍ଯ୍ୟନ୍ତେ । କାରୁଣ୍ୟଜଳ ଯେନ ଏତେ ଉଛେ ।
ଜୀବମାନଙ୍କ ହୋଇ କିଛି ନାହିଁ । ସେ ବେଳେ ନାଥ ଥିଲ ତୁମ୍ଭେ କାହିଁ
ଏହା ସେ ପ୍ରଭୁ କହିଦେବ ମୋତେ । ନ କହ ଲୁଚାଇଅଛୁ ଗୁପତେ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଅର୍ଜୁନ । କହଦେବା ତୋତେ ଏହି ବଧାନ ।
ଯେବଣ ଦିନେ ବେଦବ୍ରହ୍ମ ମଲା । ବ୍ରହ୍ମାଣ୍ଡଯାକ ପ୍ରଳେ କ୍ଷୟ ଗଲା ॥
ସେ ଦିନେ ପାର୍ଥ ନୀଳଗିରି ସ୍ଥାନ । ଉତ୍ସର୍ଗ ଅଟେ ସହସ୍ର ଯୋଜନ ।
ଜଳପବଟ ଯେ ସେହି ସ୍ଥାନରେ । କ୍ଷୟ ନ ଯାଇ ସେହି ପ୍ରଳୟରେ ।
ସେହି ବଟପତ୍ରରେ ଅମ୍ଭେ ଥାଉଁ । ସେ ସ୍ଥାନଛାଡ଼ି କାହିଁକି ନ ଯାଉଁ ।
ବ୍ରହ୍ମାଣ୍ଡ ପ୍ରଳେ ନାଶଯିବା କଥା । ଦେଖିଣ ଅମ୍ଭେ ପାଉଁ ବଡ଼ ବ୍ୟଥା
ତାହା ଶୁଣିକରି କହେ ଅର୍ଜୁନ । ସେ ତରୁ କେତେ ଉଚ୍ଚ ହୋଏ ପୁଣ
କେମନ୍ତ ଭାବେ ତହିଁ ତୁମ୍ଭେ ଥାଅ । କରୂପେ ତହିଁ କେତେବେଳେ ଯାଅ
ଅର୍ଜୁନ ବଚନ ଶୁଣି ଶ୍ରୀପତି । ବୋଲନ୍ତି ଶୁଣ ହେ ପଞ୍ଚୁପନ୍ତି ।
ଆମ୍ଭଙ୍କୁ ପୁଣ ତୁ ଯାହା ପଚାରୁ । ଅନନ୍ତ ମୂର୍ତ୍ତି ଅଟଇ ସେ ତରୁ ।
ବ୍ରହ୍ମାଣ୍ଡ ପ୍ରଳୟ ସମୟେ ପୁଣ । ଜଳ ବଢ଼ଇ ଦଶଲକ୍ଷ ଗୁଣ ।
ଜଳକୁ ଛାଡ ବାରଯୋଜନ ପର୍ଯ୍ୟନ୍ତେ । ସେ ବଟ ବଢ଼ି ଯାଇ ଅଛଇ ଉଚ୍ଛେ ।
ଆକାଶେ ଯାଇ ଲାଗି ଥାଇ ଶିଖା । ସେ ବଟ ପତ୍ରେ ଅମ୍ଭେ ଥାଉଁ ଏକା
ବୈକୁଣ୍ଠପୁର ନୀଳଗିରି ସ୍ଥାନ । ତହିଁ ସେ ବଟ ହୋଇଁ ଉତପନ ।
ସେ ବଟମୂଳେ ସୁଖଭୁବ ଯେତେ । ବୈକୁଣ୍ଠ ସୁଖଭୁବ ନୋହେ ତେତେ
ସେ ସ୍ଥାନ ପାପ ଭେଦାଭେଦ ନାହିଁ । ବ୍ରହ୍ମଶାପାଦି ନ ବାଧଇ ତହିଁ ।
ଆମ୍ଭର ସେହୁ ବଡ଼ ପ୍ରୀତିସ୍ଥାନ । ଯହିଁ ଥିଲେ ତହିଁ କରୁ ବଶ୍ରାମ ।
ପୂର୍ବରୁ ଅମ୍ଭେ କରଅଛୁଁ ସତ୍ୟ । ପ୍ରସଙ୍ଗେ ହେଉ ହୋଇବା ଉଦନ୍ତ ॥
ପ୍ରତିମାମାନ ଭଗ୍ନ ହୋଇଗଲେ । ସେ ସ୍ଥାନ ମୁହିଁ ନ ଛାଡ଼ଇ ଭଲେ ।

ପବନ୍ତ ସ୍ଥାନ ଅଟେ ସିନ୍ଧୁତଟ । ପାତାଳରୁ ଫିଟିଅଛୁ ସେ ବାଟ ।
ପୁଣି ବୃତ୍ତାନ୍ତ ବୋଲଇ ଅର୍ଜୁନ । କହ ସେ ବାଟ କେତେ ଉଚ୍ଚ ପୁଣ ।
ତହିଁରେ ତୁମ୍ଭେ କଲ୍ କଳ ଠଣା । କପିଁ ତହିଁ ପାଣି ନୋହେ ଚୂର୍ଣ୍ଣ ।
ତେଣୁ ମୁଁ ତୋତେ ପଗୁରୁଛୁ ହରି । ଏ କଥା ତତ୍ତ୍ୱ କହ ଫେଡ଼କରି ।
ପ୍ରଭୁ ବୋଇଲେ ଶୁଣ ପଣ୍ଡୁସୁତ । ତୁହ୍ମ ଯେ ପଗ୍ଭର ପାରୁ ଏ ତତ୍ତ୍ୱ ।
ସେ ଜଳ ଯେତେ ଦୂର ଖୋଦ ଯାଇ । ବାଟ ଯେ ସେତେ ଦୂରକୁ ବହଇ ।
ପ୍ରଳୟଜଳ ଛୁଟଥାଇ ଯେତେ । ବାଟ ଉସର୍ଗ ଛୁଟଥାଇ ତେତେ ।
ଯେ ଯାହା ମାଙ୍ଗିକରେ ଅସି ରହ । ଶୁଣ ଅର୍ଜୁନ ମନ ଦେଇ ଦେଇ ।
ମାନବବସ୍ତୁ ନିର୍ମିତରେ ହର । ନାଭିରୁ ପଦ୍ମବୃକ୍ଷ ଜାତ କର ।
ସେ ପଦ୍ମବୃକ୍ଷ ଗୋଟିକୁ ଯେ ଲକ୍ଷ । ବ୍ରହ୍ମାଣ୍ଡ ମଧ୍ୟେ ନାହିଁ ସମକକ୍ଷ ।
ସତୁର ସହସ୍ର ଯୋଜନ ଯେତେ । ପଦ୍ମର ନାଡ଼ ଗୋଟା ମୋଟ ତେତେ
ନବମ ଗୋଟି ଯେ ପାଖୁଡ଼ା ତହିଁ । ପାଖୁଡ଼ା ଗୋଟାକେ ଫୁଲ ଫୁଟଇ ।
ସେ ପଦ୍ମକେଶରେ ଆମ୍ଭର ମନ । ବଧାତା ରୂପେ କରଇଲ୍ଲି ଜନ୍ମ ।
ବ୍ରହ୍ମା ଜନ୍ମ ହୋଇଁ ସର୍ଜି ଜଗତ । ଜଗନ୍ନାଥ ଧ୍ୟାୟି କହେ ଅଚ୍ୟୁତ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମଂସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ଭବଗ୍ରାହ ସଂଶୟ ହୋଇଲା ମୋହତ ।
ବ୍ରହ୍ମା ଜାତ ହୋଇ କେଉଁ କୃତ୍ୟ କଲେ ଅଜ୍ଞା ହେଉ ନାଥ ମୋତେ
ଶ୍ରୀହରି ବୋଇଲେ ଶୁଣ ହେ ଅର୍ଜୁନ ବ୍ରହ୍ମାପଦ ତାକୁ ଦେଇଁ ।
ସୃଷ୍ଟିର ଭିଆଣ ଏରୂପେ ହୁଅଇ ସେ କଥାମାନ ଯେ କହୁଁ । ୧ ।
ଅମର ମର୍ତ୍ତ୍ୟ ପାତାଳ ତିନପୁରେ ଚତୁର୍ଦ୍ଦଶଭୁବନେ ଜିତା
ସ୍ୱର୍ଗଲୋକ ନାଗଲୋକ ମର୍ତ୍ତ୍ୟଲୋକ ସବୁଙ୍କର ସେହୁ ପିତା । ୨ ।
ସକଳ ଲୋକଙ୍କୁ ସଞ୍ଜୀବନୀ ମନ୍ତ୍ରେ ଜାତ କଲା ଯେ ଜଗତ ।

ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଶୂନ୍ୟଖାନ ଏ ସମସ୍ତ । ୪ ।
କାରୁଣ୍ୟଜଳ ପ୍ରଳୟ କରଭଇଲ ଯହୁଁ ଅସିଥିଲା ପୁଣ ।
ବିର୍ଦ୍ଧ ଶବ୍ଦ ତାର କିଛୁ ନ ଦିଶଇ ତହୁଁ ଯାଇଁ ହେଲା ଘନ । ୫ ।
ଯେଉଁ ସମୟରୁ ସେହି ଅମି ଥିଲାକ ସେହି ସମୟରେ ପଶିଲା ।
ସେହି ବଳେ ମୂଢ଼ ସପ୍ତଦ୍ୱୀପ ଶୋଧି ପ୍ରଳୟେ ତହିଁ ମିଶିଲା । ୬ ।
ବ୍ରହ୍ମା ଯେ ଭୁଅଣ ଜଗତରେ କଲା ସ୍ଥାବର କୀଟାଦି ଜନ ।
ସକଳ ଜନ୍ତୁର ଯେ ଯେଉଁ ବିଧାନ ଯାକୁ ଯେଉଁ ଭାବମାନ । ୭ ।
ଯାହାର ଯେମନ୍ତ ତାହାଙ୍କୁ ନିର୍ମାଣ କରଇଁ ସମ୍ପାଦଇବେ ।
ମେରୁ କନ୍ଦର ଗୁହ୍ୟବନ ପାତାଳେ ନେଇଁ ଥୋଇ ଠାବେ ଠାବେ ।
ଏମନ୍ତ ପ୍ରକାରେ ବ୍ରହ୍ମାଣ୍ଡ ରଚନା କରୁଥାଇ ତାହା ସବୁ ।
ସେହି ପ୍ରକାରରେ ସର୍ବ ଜନ୍ତୁ ଠାରେ ରହିଥାଇ କର୍ମ ସାଥି ।
ମାନବବସ୍ତୁ ବିନା ଅମ୍ଭେ ବୋଲଉଁ ବ୍ରହ୍ମାଣ୍ଡ ପାଳକନାଥ ।
ତୁ ଯେ ପୃଚ୍ଛୁଛୁ ଲୁ କଥାତା ସବୁ ନ ଶୁଣିଲୁଟିକ ହୋ ପାର୍ଥ ।
ଅର୍ଜୁନ ବୋଲଇ ଶୁଣ ଦେବହରି କଥାଏ ପୁଚ୍ଛଇଁ ତୋତେ ହ ।
ଏ ସୃଷ୍ଟି ପାତନା କେଉଁ କଥମାନ ଆଜ୍ଞା ହେଉ ନାଥ ମୋତେ ।
କେଉଁ ଯୁଗରେଟି କି କି କଥାମାନ ଜାଣଇଁ ଏଥି ତାରତା ।
କେଉଁ ଯୁଗରେ କେଉଁ ଭେଦମାନ ଯେ କିରୂପେ କେଉଁ ବିବସ୍ଥା ।
ଶ୍ରୀହରି ବୋଲନ୍ତି ଶୁଣ ହୋ ଅର୍ଜୁନ କହୁଛି ମୁଁ ତୋତେ ଯାହା ।
ଅପ୍ରତେ ନ କର ସନ୍ତୋଷ ମନରେ ଶୁଣ ସୁଭଦ୍ରାର ନାହା ।
ଯେତେବେଳେ ଏହି ସପ୍ତଦ୍ୱୀପା ମହୀ ନ ଥିଲେ ଜୀବାଦି କେହି ।
ତହୁଁ ଥୋକାଏକ ଦିନାନ୍ତରେ ମହୀ ବୃକ୍ଷମୟ ସବୁ ହୋଇ ।।
ବଢ଼ିଲେ ଯେ ଯାହା ମୂଳେ ରସ ଯେନ ଲାଗିଲେ ନକ୍ଷେମସ୍ତଳେ ।
ଲତା ଗହନ ଅଗମ୍ୟ ବନଭୂମି ଶେଷ ତନୋଦ୍ଧ୍ୱଣ ବଢ଼ିଲେ ।
କେଉଁ ବୃକ୍ଷ ପାଞ୍ଚ ଯୋଜନ ବଢ଼ିଲା କେ ବଢ଼ି ତେନ ଯୋଜନ ।
କାର କାୟା ତିନ ଯୋଜନ ବଢ଼ିଲା ଚାରି ଯୋଜନ ପ୍ରମାଣ ।।

କାହାର ଡାଳ କୋଡ଼ି କୋଡ଼ି ହୋଇଣ ଶାଖାମାନ ପଲ୍ଲବଲେ ।
ଯେଣିକ ଗ୍ରହିଲେ ଆନ କିଛି ନାହିଁ ସବୁହିଁ ବୃକ୍ଷ ଦିଶିଲେ ॥
ସେ ଯୁଗ ଗୋଟା ଏହିମତେ ନାଶିଲା ଶୁଣ ଭୁ ହେ ପଣ୍ଡୁସୁତ ।
ପୁଣି ତହିଁ କିଛି ଦିନାନ୍ତେ ବ୍ରହ୍ମାଣ୍ଡ ମଧ୍ୟେ ପୂରିଲା ପର୍ବତ ॥
ଯେତେ ଯୋଜନ ଲମ୍ବ କେଉଁ ପର୍ବତ ଛବେନିଶତ କେ ଆରମ୍ଭ ।
କେହୁ ଚାରିଶତ ଯୋଜନ ବଢ଼ିଲା କେହୁ ତିନିଶତ ଲମ୍ବ ॥
ଏମନ୍ତେ ପର୍ବତ ପୂରିଗଲା ମହୀ ଆନ ଜନ୍ତୁ କେହି ନାହିଁ ।
ଏ ଯୁଗ ଗୋଟା ଏହିମତେ ଗଲା ଯେ ଆନ ଯୁଗ ପୁଣ ହୋଇ ॥
ତହିଁ ଉତ୍ତାରେ ଯେ ବ୍ରହ୍ମାଣ୍ଡ ମଧ୍ୟରେ ତୃଣମାନ ଉପୁଜିଲା ।
କେ ବଢ଼ିଲା ଶତହାତ କେ ସହସ୍ର ଜଗତଯାକ ପୂରିଲା ॥
ତୃଣ ବ୍ୟବକେ ଆନ ନାହିଁ ମହୀରେ ଏହା ଦେଖିଅଛି ମୁହିଁ ।
ସେ ଯୁଗ ଗୋଟା ଏହିମତେ ଗଲାଟି ଶୁଣ ଭୁ ସୁଭଦ୍ରାସାଇଁ ॥
ଆଉ ଯୁଗ କଥା କହିବା ହେ ତୋତେ ଶୁଣ ଭୁ ଯୁଧିଷ୍ଠି ଭାଇ ।
ବାଲି ବ୍ୟବକେ ହୋ ବ୍ରହ୍ମାଣ୍ଡ ମଧ୍ୟରେ ମାଟି ବୋଲି କିଛି ନାହିଁ ॥
ତିଳମାତ୍ରକ ମାଟି ତଲାସିଲେ ବାଲି ବିନା ମାଟି ନାହିଁ ।
ସେ ଯୁଗଟି ଏହିମତେ ଯହୁଁ ଗଲା ପୁଣି ଅଗ୍ନିମୟ ମହୀ ॥
ଦଶସହସ୍ର ବରଷ ବିତିଗଲା ସେ ଅଗ୍ନିଟି ଜଳୁଥିଲା ।
ପୁଣି ସେ ମେଦିନୀ ଯୁଗ ହୁଇ ଜଳ ପାଉଁଶ ହୋଇ ରହିଲା ॥
ଜନ ମନୁଷ୍ୟ ନ ଥିଲେ ସେ ବେଳରେ ତାହା ଦେଖିଅଛି ତୋତେ ॥
ଏମନ୍ତେ କିଛି ଦିନାନ୍ତରେ ପୁଣି ଯେ ପିମ୍ପୁଡ଼ି ମହୀ ପୂରିଲେ ॥
ସେ ଯୁଗ ଗୋଟା ଏହିମତେ ଗଲାଟି ପୁଣି ଧେନୁ ହେଲେ ଜାତ ।
ଆନ ଜନ୍ତୁମାନ କିଛିହିଁ ନାହାନ୍ତି ଧେନୁ ପୂରିଲେ ଜଗତ ॥
ସେ ଯୁଗଗୋଟା ଏହିମତେ ଗଲାଟି ଆଉ ଯୁଗେ ହସ୍ତୀମୟେ ।
ବ୍ରହ୍ମାଣ୍ଡଯାକ ପୂରି ଯୋଟି ରହିଲେ ବର୍ଷ ଅଶୀଲକ୍ଷ ଯାଏ ॥
ସେ ଯୁଗଗୋଟି ଯହୁଁ ହତ ହୋଇଲା ଆଉ ଯୁଗେ ଅଶ୍ୱ ଜାତ ।

ଦଶଲକ୍ଷ ବର୍ଷ ଯାଏ ପୁଣ ସେହୁ ଅଶ୍ୱ ମୂଉଲେ ଜଗତ ॥
ସେ ଯୁଗଗୋଷ୍ଠୀ ଭୋଗ ହୋଇ ଗଲା ଯେ ପୁଣ ହେଲା ଆର ଯୁଗ ।
ତାହା କହିବା ତୋତେ ଶୁଣ ହେ ପାର୍ଥ ବ୍ୟାଘ୍ର ଭଲ୍ଲୁ ଖଗ ମୃଗ ॥
ଜନ୍ତୁ ଜାତକେ ସେ ଯୁଗ କଲେ କ୍ଷୟ ଭୋଗ କଲେଟି ଏ ମନ୍ତ୍ରୀ ।
ପତଙ୍ଗ ଭୁଜଙ୍ଗ କା ଆଦି ଯେତେକ ଛପନାକୋଟି ଜୀବହିଁ ॥
ଯେଉଁ ଯୁଗରେ ଯେତେ ଜାତ ହୋଇଲେ ସମସ୍ତେ ହୋଇଲେ ଲୀନ ।
ଏବେ କହିବା ତୋତେ ଶୁଣ ହେ ପାର୍ଥ ମାନବ ଜନ୍ମ ବିଧାନ ॥
ସ୍ଥାବର ଜଙ୍ଗମ କୀଟ ଭୁଜଙ୍ଗାଦି ନ ଜାଣନ୍ତି ଶାସ୍ତ୍ରପାଠ ।
ମାନବ ଶରୀରେ ସମସ୍ତ ଜାଣନ୍ତି ଛପନକୋଟିରୁ ଶ୍ରେଷ୍ଠ ॥
ଯେତେକ ବୃକ୍ଷ ଓ ଯେତେକ ଜନ୍ତୁ କୃତ୍ୟ ଏହି ଲୀଳା ଯେ ସଂସାର ।
ସମସ୍ତଙ୍କୁ ଭୋଗ ମାନବ କରଇ କହିଲି ତୋର ଆଗର ॥
ଯାତ୍ରା ତୀର୍ଥ ଯେତେ ବ୍ରତ ବିଦ୍ୟମାନ ସବୁ ମାନବ କରଇ ।
ମାନବ ମାନଙ୍କେ ହରେରାମକୃଷ୍ଣ ନାମ କେହି ନ ଧରଇ ॥
ଜଗତ ଅଷ୍ଟାଳି ଦଣ୍ଡସିଂହାସନ ଛତ୍ର ଚାମର ନୃପତି ।
ଦୁଃଖ ସୁଖ ହାନି ଲାଭ ନର ବିନା କେହି ଭୋଗ କରେ କ୍ଷିତି ॥
ଏହି ସେ ସାମନ୍ତ ସେବକ ଅଟଇ ଏହି ସମୁଦ୍ର ବ୍ରାହ୍ମଣ ।
ଏହି ଦାନ ଦିଏ ଏହି ଦାନ ନିଏ ଏହି ଯେ ଜରେ କାରଣ ॥
ଏହି ଯେ ସଂସାରେ ସେବକ ଅଟଇ ଏହି ଯେ ଗୁରୁ ଗୋବିନ୍ଦ ।
ଜଗନ୍ନାଥ ପାଦପଦ୍ମ ଆଶ୍ରେ କରି କହଇ ଅଚ୍ୟୁତାନନ୍ଦ ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟ ।

କହଇ ଅର୍ଜୁନ କରଯୋଡ଼ି ମହାବାହୁ ।
ପୃଚ୍ଛିବ କଥାଏ ମୋତେ ପ୍ରଭୁ ଅଜ୍ଞା ହେଉ ॥

ଥୋକାଏକ ଲୋକ ଯେ ଗମାର୍ଗରେଣ ପଶି ।
ସାଧୁଥାନ୍ତି ବ୍ରହ୍ମଜ୍ଞାନ ଆରମ୍ଭରେ ବସି । ୨ ।
ବିଚାରନ୍ତି ଆନ ଆନ କଥା ହୃଦୟରେ ।
ପ୍ରକୃତି ବଶରେ ପଡ଼ିଥାନ୍ତି ନିରନ୍ତରେ । ୩ ।
ଏମନ୍ତ ଲୋକ କେମନ୍ତ ଗତିକି ସେ ପାଇ ।
ଆଜ୍ଞା ହେଉ ଶ୍ରୀମୁଖରେ କମଳାର ସାଇଁ । ୪ ।
ଶ୍ରୀହରି ବୋଇଲେ ଯାହା ପୁଚ୍ଛିଲୁ ତୁ ମୋତେ ।
ସାବଧାନ ହୋଇ ଶୁଣ କହିଦେବା ତୋତେ । ୫ ।
ଶୁଣ ଅର୍ଜୁନ ଶ୍ରବଣେ ସେହି କଥାମାନ ।
ମନ ଆପଣାର କରି ହେଉରେ ତୁ ଧେନ । ୬ ।
ଯେଉଁ ଯେଉଁ ଲୋକ ଯୋଗମାର୍ଗରେ ପଶନ୍ତି ।
ବିତର୍କ ଶୀତଳ ଭାଷା ମନରେ ଭାଷନ୍ତି । ୭ ।
ଅକର୍ମ ବିଦ୍ୟାର ଧନ ବହୁତ ଯେ ଶୁଣ ।
କହି ନୁହଇ ତାହାଙ୍କ ମହିମା ଯେ ଗୁଣ । ୮ ।
ମିଥ୍ୟା ଆରମ୍ଭେଣ ବସି କରଇ ସାଧନ ।
ତାକୁ ଜାଣିବୁ କପଟୀ ଦାମ୍ଭିକ ସେ ଜନ । ୯ ।
ହୃଦୟ ଅଶୁଚି ଆତ୍ମା ଶୁଚିବନ୍ତ ନୋହି ।
ଯେତେ ଯୋଗ ଧର୍ମ କଲେ ମୁକ୍ତି ତାଙ୍କୁ କାହିଁ । ୧୦ ।
ଅମୃତଭାଣ୍ଡରେ ଯେହ୍ନେ ସୁରା ପକାଇଲେ ।
ନାଶ ଯାଇ ଏମନ୍ତ ସେ ତେମନ୍ତ ଏ ହଲେ । ୧୧ ।
ତାର ଯୋଗ କର୍ମ ଯେତେ ସେହି ପରକାରେ ।
ଅକାରଣ ଧର୍ମ ସେ କାରଣ ନୋହେ ତାରେ । ୧୨ ।
ଆହୁରି କଥାଏ ଶୁଣ କହିଦେବି ତୋରେ ।
ମୋହ ନାମକୁ ଯେ ବିଶ୍ୱାସରେ ଧ୍ୟାନ କରେ । ୧୩ ।
ସୁଫଳ ହୁଅଇ ତାକୁ ଫଳ ହୋ ଚିତେନ୍ତକ ।

କେବେହେଁ ଅଭ୍ୟାସେ ନାଶ ନୋହେ ସେହୁ ଲୋକ ।୧୪
କୀର୍ତ୍ତି ପ୍ରୀତିରେ ପ୍ରବର୍ତ୍ତି ଥାନ୍ତି ନାନାଠାରେ ।
ଚିତ୍ତ ଦେଇଥାଇ ନିତ୍ୟ ମୋ ପାଦପଦ୍ମରେ । ୧୫
ସବୁ କର୍ମ ଯୋଗ ଭକ୍ତି କଲା ତାର ହୋଇ ।
ଇନ୍ଦ୍ରାଦି ପଦ ତାହାକୁ ତୁଚ୍ଛ ଯେ ଦିଶଇ । ୧୬ ।
ଏ ମୋହର ଭାବ ଭକ୍ତି ନ ଜାଣନ୍ତି ଯେହୁ ।
ବଣା ହୋଇଁ ମଂଚୁଥାନ୍ତି ଜ୍ଞାନ ଯେ ହରାଇ । ୧୭ ।
ମୋହର ତହୁଁ ଜାତ ଯେ ହୋଉଛି ଜଗତ ।
ନ ଜାଣନ୍ତି କେହୁ ମୋର ପରମ ଯେ ତତ୍ତ୍ୱ । ୧୮ ।
ବାରିଧି ଜଳରୁ ଯେସନେ କମ୍ପ ଜାତ ।
ତରଙ୍ଗ ଲହରୀ ତହୁଁ ହୁଅଇ ଉଦ୍ଭୂତ । ୧୯ ।
ଜଳ ଲହରରୁ ଯେହ୍ନେ ଜନ୍ମ ହୋଏ ଫେନ ।
ସୃଷ୍ଟି ଜାତ ହୁଅଇ ଯେ ମୋ ତହୁଁ ତେସନ । ୨୦ ।
ଏ କଥାମାନ ମୋହର ନ ଜାଣନ୍ତି କେହୁ ।
ମତିଭ୍ରମ କରି ନାଶ ହୁଅନ୍ତି ସେହୁ । ୨୧ ।
ଯେସନେ ଅନ୍ଧକାରେ ପ୍ରାଣୀ ଗମନ କରନ୍ତି ।
ବାଟେ ରଜ୍ଜୁ ଦେଖି ସର୍ପ ବୋଲିଣ ଡରନ୍ତି । ୨୨ ।
ନୁହଇ ସତ ନିକର କରେଣ ଦେଖିଲେ ।
ନ ବଶେ ଯେସନେ ଭ୍ରମେ ମୃଗତୃଷ୍ଣା ଜଳେ । ୨୩ ।
ତେସନେକ ପ୍ରାଣୀନ୍ତି ପାର୍ଥ ଏ ଜଗତ ମାୟା ।
ଆତ୍ମା ତୃଷ୍ଣାବନେ ଦେଖ ନାଶ ଯାଏ କାୟା । ୨୪ ।
କହିଲି ଏ ହେତୁ ବୁଝି ଘେନ ତୋର ମନେ ।
ପ୍ରବୃତ୍ତି ନିବୃତ୍ତି ବେନି ଶାସ୍ତ୍ର ଏ ଶ୍ରବଣେ । ୨୫ ।
ଅର୍ଜୁନ ବୋଲଇ ପ୍ରଭୁ ଫେଡ଼ିବା ସନ୍ଦେହ ।
ଜ୍ଞାନ ସାଧିବାର ବାଟ କେମନ୍ତ ତୁ କହ । ୨୬ ।

ଆଜ୍ଞା ହେଉ ମୋତେ ଏହା କମଳାର ସାଇଁ ।
ଏମନ୍ତେ ମନକୁ ମୋର ପ୍ରତ୍ୟୟ ଆସଇ । ୨୭ ।
ଶ୍ରୀହରି ବୋଇଲେ ପାର୍ଥ ଘେନ ମୋ ବଚନ ।
ବା ଯେବେ ଅଛୁ ତୋର ବୁଝିବୁ ଏ ଜ୍ଞାନ । ୨୮ ।
ଯାହା ମୁଁ କହୁଅଛି ଆଜ୍ଞା ପ୍ରତିପାଳ ଥିବୁ ।
ସବୁ କଥା ଭଲ ପାର୍ଥ ଯେବେ ତୁ ଘେନିବୁ । ୨୯ ।
ଧର୍ମ ନାଶ ଯାଏ ପାର୍ଥ ଅପ୍ରତେ ଯେ କଲେ ।
ପୁଣି ଦୋଷ ଦେବୁ ପଛେ ନ କହିଣ ଥିଲେ । ୩୦ ।
ବ୍ରହ୍ମଜ୍ଞାନ ଜ୍ଞାନବ୍ରହ୍ମ ନୁହଇ ଏ ହୁର ।
ଗୁପତ ହୋଇ ରହିଛି ମଧ୍ୟରେ ତୋହର । ୩୧ ।
କହିଦେବା ପାର୍ଥ ତେ ତେ ଧର ତୁ ଆପନ ।
ପୂର୍ବ ସ୍ଥଡ. ପଶ୍ଚିମରେ ବଳାଅ ତୋ ମନ । ୩୨ ।
ଯଳଙ୍ଘ ତୋ ମେରୁଦଣ୍ଡ ସୋଜ ଯେ ଉମ୍ବରୁ ।
ଅର୍ଗଳ ପକାଇ ରଖ ଘଣ୍ଟିକାଦୁଆରୁ । ୩୩ ।
ନାସା ଅଗ୍ରତରେ ଦୃଷ୍ଟି ରଖ ତୁ ଲଗାଇ ।
ଆସ୍ତେ ଆସ୍ତେ କର ଭୁହି ମନକୁ ବଳାଇ । ୩୪ ।
ପବନ ଆଯୃତ୍ତ ହେଲେ ମନ ଯେ ଆଯୃତ୍ତ ।
ତୋତେ ମୁଁ କହୁଛି ବ୍ରହ୍ମଜ୍ଞାନର ଏ ତତ୍ତ୍ୱ । ୩୫ ।
ଶୁଣିମା ଶ୍ରୀହରି ବୋଲ ବୋଲଇ ଅର୍ଜୁନ ।
କର୍ପା ଏକଦୃଷ୍ଟି କର ଏ ମନପବନ । ୩୬ ।
ନାସିକା ଅଗ୍ରକୁ କର୍ପା ତଲେ କରିଥିବା ।
ଏ କଥା ସନ୍ଦେହ ମୋତେ ଫେଡ଼ିଣ କହିବା । ୩୭ ।
ଶୁଣ ତୁ ଅର୍ଜୁନ କୋଲି ବୋଲନ୍ତି ଶ୍ରୀହରି ।
ତହିଁର ଗୁଣ କହିବା ତୋତେ ଯେ ବସ୍ତାରି । ୩୮ ।
ନାସା ଅଗ୍ରେ ମନ ଦୃଷ୍ଟି ଦେଇଣ ବସିଲେ ।

ମନ ଅମନ ହୁଅଇ ଯୋଗରେ ମିଶିଲେ ॥
ନାଦବିନ୍ଦୁ ଖଞ୍ଜି ତହିଁ ପଡଇ ବନ୍ଧନ ।
ସଂସାର ଧାରଣା ନିରଞ୍ଜନକୁ ବନ୍ଧନ ॥
ଇନ୍ଦ୍ରିୟମାନଙ୍କରୁ ସେ ବିଲଗ ହୁଅଇ ।
ପ୍ରକୃତିମାନଙ୍କୁ ସବୁ ଅନଙ୍ଗେ ଦହଇ ॥
ଏମନ୍ତ ଭାବରେ ଯେହୁ ଜାଗ୍ରତ ମନ ।
ବିଶୁଦ୍ଧାତ୍ମା ବୋଲି ତାକୁ ବୋଲନ୍ତି ଅର୍ଜୁନ ॥
ଇନ୍ଦ୍ରିୟମାନଙ୍କ ସଙ୍ଗେ ମନ ବଶ ହୋଇ ।
ଅଶୁଦ୍ଧାତ୍ମା ବୋଲି ତାକୁ ତହିଁ ନାଶ ଯାଇଁ ॥
ମନ ପବନ ଯାହାର ସ୍ତମ୍ଭୀଭୂତ ହୋଇ ।
ନିଶ୍ଚୟେ ପରମପଦକୁ ସେ ପୁଣ ପାଇ ॥
ଯହିଁ ଥିଲେ ତହିଁ ଦୃଷ୍ଟି ତାହାର ସେ ରହି ।
ସେହିଠାରୁ ଅନୁଭବ ପ୍ରକାଶ ହୁଅଇ ॥
ତୋତେ ମୁଁ କହିଲି ଯାହା ସତ୍ୟ ଏ ବଚନ ।
ଏ କଥା ନ କହିଲେ ଜାଣି ନୁହଇ ଜ୍ଞାନ ॥
ଏକାଗ୍ର କରିଣ ନାସା ଅଗ୍ରରେ ଯା ଦୃଷ୍ଟି ।
ଲାଗିଥିଲେ ତାହା ମୁଖେ ଫିଟଇ କବାଟି ॥
ପବନ ଆୟତ୍ତ ହେଲେ ଆତ୍ମାକୁ ଜାଣଇଁ ।
ଗୁରୁ ଉପଦେଶ ପାଥ ସେବିଲେଟି ପାଇଁ ॥
ଗୁରୁ ଜଗନ୍ନାଥ ଦୁଇ ଏକଇ ଯେ ମତ ।
ଶ୍ରୀଗୁରୁ ଚରଣେ ଧ୍ୟାୟି କହଇ ଅଚ୍ୟୁତ ॥
ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନସସ୍ତ୍ର ବ୍ରହ୍ମବଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ନବମୋଽଧ୍ୟାୟଃ ॥

---

## ଦଶମ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ଶ୍ରୀହରି । ପୁଛଇ କଥାଏ କହ ବିସ୍ତାରି ।୧।
ଛଅଚକ୍ର ବୋଲି କେମନ୍ତ କହାଇ । ତାହା କହିବା ମୋତେ ଭବଗ୍ରାହୀ ।
କେମନ୍ତ ପ୍ରକାରେ କେଉଁ ଭୁବନା । ଦେହ ବନ୍ଧ ଗୋଷ୍ଠୀ ହୋଇଲା ରଚନା ।
ଶ୍ରୀହରି ବୋଇଲେ ଶୁଣ ସବସ୍ତି । ଛଅଚକ୍ର କଥା କହିବା ବାଞ୍ଛି ।୪।
ଗୁହ୍ୟଚକ୍ରକୁ ଯେ ଆଧାର କହି । ଚାରି ଅକ୍ଷର ସେ ସ୍ଥାନେ ବସଇ ।
ବ ଶ ସ ଷ ବୋଲି ଚାରିଅକ୍ଷର । ଆରକ୍ତବର୍ଣ୍ଣ ଦିଶଇ ଚକ୍ର ।୬
ସେ ଚକ୍ରେ ବସନ୍ତି ଦେବ ଗଣେଶ୍ୱର । ବକ୍ରତୁଣ୍ଡ ଦେବ ଘେନି ସଙ୍ଗର ।
ଯାନ ବାହନ ଅଟଇ ଉନ୍ଦୁର । ଏକୁଁ ମହିମା ଅଟଇ ଅପାର ।୮।
ତାହାପରେ ଲିଙ୍ଗଚକ୍ର ବସଇ । ଛଅପାଖୁଡ଼ା ଫୁଲ ଫୁଟିଥାଇ ।୯।
ସିନ୍ଦୂରବର୍ଣ୍ଣ ଯେ ଚକ୍ରର ଜ୍ୟୋତି । କାମଦେବଙ୍କ ରୂପ ସ୍ଥାନେ ଅଛନ୍ତି ।
କାମାକ୍ଷୀ ଦେବୀ ଘେନି ସଙ୍ଗତର । ହର୍ଯ୍ୟକ୍ଷ ବାହନ ଅଟେ ତାଙ୍କର ।
ଛଅଅକ୍ଷର ସେ ସ୍ଥାନେ ବସଇ । ବ ଭ ମ ଯ ର ଲ ଛଅ ବୋଲାଇ ।
ତୃତୀୟଚକ୍ର ନାଭିକି ଯେ କହି । ଯହିଁ ଦେହାଦମାନ ସଞ୍ଚରଇ ।
ପବନ ମୂଳସ୍ଥାନ ଅଟେ ସେହି । ଯହିଁ ଚୌଦଭୁବନ ସଞ୍ଚରଇ ।
ବ୍ରହ୍ମା ଯେଉଁ ସ୍ଥାନେ ଗଢ଼ଇ ସୃଷ୍ଟି । ସ୍ତ୍ରୀ ପୁରୁ ମର୍କଟମଣି ପ୍ରାଏଟି ।
ସେ ସ୍ଥାନେ ଅଛଇ ଅଗ୍ନିମଣ୍ଡଳ । ପାକ କରଇ ଆହାର ସକଳ ।
ଦଶଦଳରେ ପଦ୍ମ ଫୁଟିଛଇ । ଦଶଅକ୍ଷର ସେ ସ୍ଥାନେ ବସଇ ।
ଦଶଗୋଟି ନାଡ଼ି ପଦ୍ମ ଆକାର । ପ୍ରବାହିକା ବୋଲି ନାମ ତାହାର ।
ପାଦ ପାଣିକି ଗୃଢ଼ ନାଡ଼ି ଯାଇଁ । ନିନାଡ଼ କଣ୍ଠକୁ ବେଢ଼ି ଅଛଇ ।
ଇଅଁଳା ପିଅଁଳା ଶିଶୁମ୍ନା ନାଡ଼ି । ବହଇ ତ୍ରିବେଣୀ ଏ ସ୍ଥାନ ମାଡ଼ି ।
ରସନା ବାମଭାଗେ ଗଙ୍ଗା ବହି । ଦକ୍ଷିଣ ପାଶେ ଯମୁନା ବହଇ ।
ସରସ୍ୱତୀ ବହେ ମଧ୍ୟଭାଗର । ଏକଇ ଦ୍ୱାର ଶିଶୁମ୍ନା ଘର ।
ଇନ୍ଦ୍ରକଣ୍ଠ ନାଡ଼ି ତଳେ ବହଇ । ମଳ ମୂତ୍ର ସେ ଯହିଁ ଉଦ୍ଧର୍ଗଇ ।
ଅନ୍ତ ପିତ୍ତ ପୂଟି ପିଳୋହି ଛନ୍ଦ । ସେହି ନାଡ଼ି ମଳଭାଣ୍ଡକୁ ରୁନ୍ଧ ।

ଏକଇ ନାଡ଼ ବେଳଭଗ ହୋଇ । ମଳ ମୂତ୍ର ଭରନ୍ତେ ଭନ୍ତରେ ବନ୍ଧ ॥
ଅନ୍ତ୍ର ପୃଷ୍ଟ ନାଡ଼ି ସାତ ଯେ ହାତ । ଯନ୍ତ୍ରିତ କରନ୍ତି ବ୍ରହ୍ମା ସମସ୍ତ ॥
ଅଷ୍ଟମ ଅଙ୍ଗୁଳ ଅମର ସ୍ଥାନ । ପଦ୍ମଦଳ ଅଷ୍ଟଫୁଲ ପ୍ରମାଣ ॥
ମଳ ଅଂଶ ଅଷ୍ଟଅଙ୍ଗୁଳେ ରହି । ଛଅଅଙ୍ଗୁଳରେ ହୋଇଲା ପିଣ୍ଡୋଦ୍ଧ ॥
ଆହାର ସମ୍ଭାଇଁ ଯେଉଁ ନାଡ଼ିରେ । ଛନ୍ଦ୍ରଦଶହାତ କହନ୍ତି ତୋରେ ॥
ଅଗ୍ନି ବାୟୁ ଦୁହେଁ ଏକସ୍ଥାନରେ । ଭ୍ରମଣ କରନ୍ତି ଷୋଳହାତରେ ॥
ନାଭି ସ୍ଥାନରୁ କଣ୍ଠ ପର୍ଯ୍ୟନ୍ତେ । ଷୋଳହାତ ନାଡ଼ି କହନ୍ତି ତୋତେ ॥
ତିନହାତ ଅଧେ ଅନ୍ତ୍ରଯୁଷ୍ଟିରେ । ସାତହାତ ପ୍ରକଟିଲି ଶରୀରେ ॥
ଛଡ଼ ଅଙ୍ଗୁଳରେ ରସନା ଜାଣ । ଷାଠିଏହାତ ହୋଇଲେକ ପ୍ରମାଣ ॥
ନାଡ଼ିର ସାର ନାଭିଗନ୍ଧ ମୂଳ । ଯହିଁରୁ ଜନ୍ମ ହୁଅନ୍ତି ସକଳ ॥
ଯେଉଁ ଚକ୍ରରେ ବିଜେକଲେ ବ୍ରହ୍ମା । କି କହିବି ଅବା ତାର ମହିମା ॥
ହଂସବାହନେ ସାଙ୍ଗବିଙ୍ଗି ଘେନି । ଦଶଦଳରେ ବିଜେ ପଦ୍ମଯୋନି ॥
ଡ ଠାରୁ ଫ ପର୍ଯ୍ୟନ୍ତେ ଯେ ତହିଁ । ଦଶଅକ୍ଷର ବେଢ଼ି ରହିଛଇ ॥
ଏଥି ଉପରେ ହୃଦଚକ୍ର ସ୍ଥାନ । ବିଷ୍ଣୁ ଦେବତା ଗରୁଡ଼ ବାହନ ॥
ଲକ୍ଷ୍ମୀଙ୍କ ବାମାଗ୍ରରେ ଘେନି ତହିଁ । ଦ୍ୱାଦଶ ଅକ୍ଷର ବସଇ ଯହିଁ ॥
ଜୀବଆତ୍ମାର ସେ ଅଟଇ ଘର । କେଶରେ ବିଜେ ପରମଈଶ୍ୱର ॥
ସୁକର୍ମ କୁକର୍ମ ଯେତେକ ହୋଇ । ଯେତେ ବିଗ୍ରହ ସେ ସ୍ଥାନେ ଛଡ଼ଇ
ଦ୍ୱାଦଶଦଳ ପଦ୍ମ ଉଦେ ହୋଏ । କଅଠ ରୁ ଠଅ ଅକ୍ଷରଯାଏ ॥
ନାଭିରୁ ବାୟୁ ହୃଦଯକୁ ଅସି । ମନର ସଙ୍ଗେ ଏ ପବନ ମିଶି ॥
ଏଥି ଉପରେ କଣ୍ଠଚକ୍ର ସ୍ଥାନ । ଷୋଳଅକ୍ଷର ବସେ ବରପନ ॥
ଦୁଇଅକ୍ଷର ବସେ ଦୁଇପାଟି । ହସ୍ତାଙ୍ଗୁଳି ଦୁଇକ୍ଷରେ ପ୍ରକଟି ॥
ଦୁଇଅକ୍ଷର ହୋଇ ଦୁଇ ଭୁଜ । ଦୁଇକ୍ଷର ବସେ ଦୁଇ ଉରଜ ॥
ଦୁଇକକ୍ଷ ପାଖେ ଦୁଇଅକ୍ଷର । ବସେ ଦୁଇକ୍ଷର ଦୁଇ କର୍ଣ୍ଣର ॥
ଦୁଇକ୍ଷର ବସେ ଓଷ୍ଠକୁ ଘେନି । ସୁଷୁମ୍ନା ମିଶି ଓଁକାର ବେନି ॥
ଏକ ଅକ୍ଷର କେ ରସନା ଘେନି । ଏମନ୍ତେ ଷୋଡ଼ଶ ହୋଇଲା ଜାଣି ॥

ଲଲାଟ ଉନ୍ତ ଯେ ଏଥି ଉପରେ । ବେନି ଅକ୍ଷର ବସଇ ଯହିଁରେ ॥
ବାମ ଦକ୍ଷିଣେ ବେନାକ୍ଷର ମେଳ । ଆବୋର ରହଛନ୍ତି ସହସ୍ରଦଳ ॥
ସହସ୍ରଦଳରେ ଦଶମ ଦ୍ୱାର । ଦଶଦୁଆରେ ମନର ବିହାର ।
ସେ ସ୍ଥାନରେ ଅଛି କଳ୍ପଦ୍ରୁମ । ସେଠାରେ ସ୍ଥିର କରଇ ବିଶ୍ରାମ ॥
ବୋଣାଖମ୍ବ ପାର୍ଥ ତହିଁରେ ରହି । ଅନ୍ୟାନ୍ୟ ବାୟୁ ତହିଁ ସଞ୍ଚରଇ ॥
ମନର ଘରଟି ବୋଣାଖମ୍ବର । ଭ୍ରମଣ କରେ ସକଳ ଠାବର ॥
ଛଡ଼ିଚକ୍ର ପରେ କରେ ବିହାର । ଛଚକ୍ରେ ପାର୍ଥ ପରମଈଶ୍ୱର ॥
ଶୁଣିଲନ୍ତି ପାର୍ଥ କହିଲ ମୁହିଁ ଗୁପ୍ତଜ୍ଞାନ ନ କହିବୁ କାହିଁ ।
ଶୁଣି ଅର୍ଜୁନ କୃତକୃତ ହୋଇଁ । ପାଦପଦ୍ମରେ ଶିର ଦେଲା ନେଇଁ ॥
ସେହି ପାଦପଦ୍ମ ନିରତେ ଧ୍ୟାୟି । ଅଚ୍ୟୁତାନନ୍ଦ ଦାସ ଯେ କହଇ ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପଞ୍ଚସଖା ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ ।

ଅର୍ଜୁନ ବୋଲଇ ଶୁଣ ମହାପ୍ରଭୁ ପୁଛଇ ମୁଁ ଜ୍ଞାନସାର ।
କେମନ୍ତେ ସେ ଜମ୍ବୁଦ୍ୱୀପ ଭରତଖଣ୍ଡ କହିବା ତହିଁ ବିସ୍ତର । ୧ ।
କେମନ୍ତେ ହୋଇଁ କ୍ଷେତ୍ରଖଣ୍ଡ ପୃଥିବୀ କାହିଁ କେଉଁ ଦେଶେ ବସି ।
ଯାଜନଗରୁ ନୀଳଗିରି ପର୍ଯ୍ୟନ୍ତେ ମହିମା କହି ବିଶେଷି । ୨ ।
ଶ୍ରୀହରି ବୋଲନ୍ତି ଶୁଣ ହୋ ଅର୍ଜୁନ ଶାସ୍ତ୍ର ପୁରାଣରେ ଅଛି ।
ହରଗଉରୀଙ୍କ ସମ୍ବାଦ କଥାଏ ଶ୍ରୀଗୁରୁମୁଖୁଁ ଶୁଣିଛି । ୩ ।
ପ୍ରଥମେ ଲକ୍ଷଯୋଜନ ଜମ୍ବୁଦ୍ୱୀପ ସେ ମେଦିନୀ ଅକଳିତ ।
ନବଖଣ୍ଡମଧ୍ୟେ ଭରତଖଣ୍ଡ ଭୂମି ନାମ ସେ ଅଟଇ ଖ୍ୟାତ । ୪ ।
ସେ ଭୂମିଖଣ୍ଡର ପ୍ରମାଣ ଅଟଇ ଦ୍ୱାଦଶ ଯୋଜନ ସୀମା ।
ନୃହଇ କଲି କେ କେଉଁଣେ ଅଛି ପାର୍ଥ କହିବା କିଛି ମହିମା । ୫ ।
ଭରତଖଣ୍ଡ ପାଦ ଦୁଇ ଅଟଇ ଯାଜନଗ୍ର ନାମେ ପୁର ।

ପ୍ରଥମେ ସେଠାରେ ବିରଜା ଦେବୀର ପାଦପଦ୍ମେ ସେବା କର । ୬ ।
ବରାହଦେବ ଯେ ବୈତରଣୀ ସଙ୍ଗେ ମହାଦେବ ବିଲୋଚନ ।
ତୈର ଦେଉଳ ସେ ସ୍ଥାନରେ ବପିତ୍ର ପାଞ୍ଚକୋଶ ଆୟତନ । ୭ ।
ଲୋକେ ଯେ ଭୁଆଣ ଏ କ୍ଷେତ୍ର ମଧ୍ୟେଣ ଆନ ନିୟମ ଯେ ନାହିଁ ।
ଯାଉଁଳବନ୍ଧରେ ନିୟମ କଲେ ଯେ ତତକ୍ଷଣେ ସେ ଫଳଇ । ୮ ।
କେବେହେଁ ପୁରୁଣା ନୁହଇଁ ସେ କ୍ଷେତ୍ର ସହସ୍ରଯୁଗେ ନବୀନ ।
ସେ ସ୍ଥାନ ଦକ୍ଷିଣ ଭାଗରେ ବସିଛି ଦେଶ କାବେର ନାମେଣ । ୯ ।
ବ୍ରାହ୍ମଣୀନଦୀ ସଙ୍ଗତରେ ସରଛି ନିତଠୋଉରଭାଗରେ ।
ସେ ଭୂମି ମହିମା କହିବା ଅର୍ଜୁନ ମୂଳପଠ ବର୍ତ୍ତରେ । ୧୦ ।
ଦେଶେକ ବସିଛି ଅଳସୁଆ ବୋଲି ତାର ଦକ୍ଷିଣଭାଗରେ ।
ବରୁପାଉତ୍ତରଭାଗଭୂମିଖଣ୍ଡ ମୂଳସୂଏ ବୋଲି ତାରେ । ୧୧ ।
ଶୁଣ ଅର୍ଜୁନ ଦକ୍ଷିଣଭାଗେ ପୁଣ କଟକ ଦେଶଟି ସେହୁ ।
ଭୁତଭୂମି କନିଭାଗଟି ଅଛଇ ଓଡ଼ିଶା ରାଜ୍ୟକୁ ଚାହିଁ । ୧୨ ।
ଏଥୁଅନ୍ତେ ଶୁଣ ବସ୍ତୁରୂପେ ଜାଣ ଭୂମିଖଣ୍ଡ ଏକ ଉଜ ।
ବ୍ରହ୍ମଭୁବନେଶ୍ୱର ଶଙ୍ଖଚକ୍ର ଯେ ଗଦାପଦ୍ମ ଚତୁର୍ଭୁଜ । ୧୩ ।
ଭୂତଭୂମି କର କମଳ ଅଛଇ ପେଟକୁକ୍ଷାଦ୍ଦ ଏ ସ୍ଥାନ ।
କୋଠାଗ୍ନି ଯହିଁରେ ଦହନ କରୁଛି ଆହାର ପାକ ବିଧାନ । ୧୪ ।
ଏଥୁ ଅନନ୍ତରେ ଦକ୍ଷିଣଭାଗରେ ରାହାଙ୍ଗ ଯେ ଦେଶ ବସି ।
ଭୁଲସିକଉବି ଏହି ଭୂତଭୂମି ରହେ ହୃଦୟ ଯା ଭାଷି । ୧୫ ।
ଶୁଣ ଧନଞ୍ଜୟ ଦକ୍ଷିଣଭାଗରେ ଅଠରନଳା ଯା ନାମ ।
ଭୂତଭୂମି କଣ୍ଠ ସ୍ଥାନ ଏ ଅଛଇ ଷୋଳଦଳଙ୍କ ବିଶ୍ରାମ । ୧୬ ।
ତଥିଉପରେ ହ୍ରାସ ଅଟେ ଶୁଣନ ତାର ଅର୍ଦ୍ଧମାଏ ନାମ ।
ତ୍ରିପୁରାଦେବୀ ଯେ ତାହାଙ୍କୁ ସେ ବୋଲି ଭାବୁଛନ୍ତି ପୁରସ୍ତମ ୧୭ ।
ପରାଶର ବୋଲି ଯେଉଁ ଭୂମିଖଣ୍ଡି ଗଦାହସ୍ତ ସେ ଅଛଇ ।
ଶଙ୍ଖହସ୍ତ ବୋଲି ହାଟକ ଈଶ୍ୱର ଭରତଭୂମି ସେ ହୋଇ । ୧୮ ।

ଶୁଣ ଅରଜୁନ ଏଥୁ ଅନନ୍ତରେ ବଡ଼ଦାଣ୍ଡ ବୋଲି ଯାହା ।
ଭରତଭୂମିର ଗାଲପାଟି ଦୁଇ ଥାନମୁଦ୍ରା ବୋଲି ତାହା । ୧୯ ।
ଭରତଭୂମି ସିଂହଦ୍ୱାର ଯେଠାରେ ଗୋପ୍ୟ ଜଗନ୍ନାଥ ତହିଁ ।
ସେ ଭୂମି ମୁଖ ନାସାପୁଟ ଏହାଟି କାଶିବିଶ୍ୱନାଥ ଯହିଁ । ୨୦ ।
ଭରତଭୂମି ଦନ୍ତପାଟି ବାଇଶି ପାବଚ୍ଛ ନାମ ଯାହାର ।
ଜିହ୍ୱା ମୁଖ ଜଗମୋହନ ଅଛଇ ଗରୁଡ଼ସ୍ତମ୍ଭ ଯାହାର । ୨୧ ।
ମନ ପବନ ଗରୁଡ଼ ନାମ ରହି ଦେଖନ୍ତି ପୁରୁଷୋତ୍ତମ ।
କଳାବଟ ଏ ନୟନ କାଳନ୍ଦୀ ତଟରେ ବଟ ବିଶ୍ରାମ । ୨୨ ।
ବଟେଶ୍ୱର ସେହି ସ୍ଥାନରେଣ ସ୍ଥିତ ସଦ୍ଦୃଶ୍ୟ ଅଦୃଶ୍ୟ ପ୍ରାପ୍ତେ ।
ବିକୁଟଭୂମି ମଧ୍ୟରେଣ କପାଳମୋଚନ ମୂରତି ରହେ । ୨୩ ।
ବିଲ୍ୱେଶ୍ୱର ଜମ୍ବେଶ୍ୱର ମାର୍କଣ୍ଡ ପାତାଳେଶ୍ୱର ଏ ସ୍ଥଳେ ।
ଜ୍ୟୋତି ଅଖଣ୍ଡ ନିର୍ମଳ ନିରଞ୍ଜନ ମହିମା ନୋହେ ବିସ୍ତାର । ୨୪ ।
ଶଙ୍ଖନାଳରେ କପିଳେଶ୍ୱର ଈଶ୍ୱର ଜମ୍ବେଶ୍ୱର ତହିଁ ପାଶ ।
ଅନେକ ମହିମା ଅଷ୍ଟଶମ୍ଭୁଙ୍କର କହି କେ କରିବ ଶେଷ । ୨୫ ।
ଅଷ୍ଟଚଣ୍ଡି ନାମ ଶୁଣ ହେ ଅର୍ଜୁନ ବିମଳା ରାମଚଣ୍ଡିକା ।
କାଳିକା ବାସୁଳୀ ଚର୍ଚ୍ଚିକା ମହାମାୟା ଅର୍ଦ୍ଧଶୋଷଣିକା । ୨୬ ।
ସର୍ବମଙ୍ଗଳା ସଙ୍ଗତେ ଯେଣି ଅଷ୍ଟଚଣ୍ଡିକା ନାମଟି ଏହି ।
ଅଷ୍ଟଶମ୍ଭୁ ଅଷ୍ଟଚଣ୍ଡୀ ଏ କ୍ଷେତ୍ରକୁ ବେଢ଼ିଣ ଅଛନ୍ତି ରହି । ୨୭ ।
କଳାବଟ ପାଶରେ ରତ୍ନସିଂହାସନ ଉପରେ ଠାକୁର ।
ଶ୍ରୀଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ ସଙ୍ଗତର । ୨୮ ।
ସର୍ବ ନଇବେଦ୍ୟ ଲାଗଇ ଯେଉଁଠାରେ ମଣୋହି କୋଠାରେ ଥୋଇ ।
ବାସନା ଚେତନା ଜ୍ୟୋତିରେ ଯେନି ମଣୋହି ଭୋଗ କରଇ । ୨୯ ।
ଜୀବକର୍ତ୍ତା ସେ ଯେ ଜଗତ ଈଶ୍ୱର ଜୀବରୂପେ ଭୋଗ ତାର ।
ଅଶେଷ ସଂସାର ଚରାଚର ଯାର କଳ୍ପଣାରେ ଅବତାର । ୩୦ ।
ମୁହିଁ ଅବା କେଉଁ ଛାରଲୋକ ହୋଇ କହିବ ତାଙ୍କ ମହିମା ।

ଯାହାର ବୈଷ୍ଣବମାୟାରେ ଭ୍ରମନ୍ତ ହର ନର ସୁର ବ୍ରହ୍ମା । ୬୧ ।
କୋଟିଏ କୋଟି ଗାଣ୍ଡିବେ ମୁଁ ଅନ୍ତର ଜାଣୁଁ ମୋର ଏତେ ଜ୍ଞାନ ।
ଶ୍ରୀହରି କୃପାରେ ଏ ଗୀତା ପ୍ରକାଶ କହେ ଅଚ୍ୟୁତ ଅଧମ । ୬୨ ।

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ ।

କୃଷ୍ଣ ଚରଣତଳେ ପଡ଼ି ପାର୍ଥ । ସନ୍ଦେଶ ଫେଡ଼ି କହ ଜଗନ୍ନାଥ ।୧।
ବାକି କେତେ କଥା ଅଛଇ ପର । ଫିଟୁ ମୋ ମନରୁ ସଂଶୟ ଭାର ॥
ଅଙ୍ଗନ୍ୟାସ କରନ୍ୟାସ ବିସ୍ତର । ଆତ୍ମାଶୁଦ୍ଧି ଭୂତଶୁଦ୍ଧି ପ୍ରକାର ।୩।
ମାତୃକା ଷୋଡ଼ଶ ପୂଜା ସଂଯୋଗ । କେଉଁ ମନ୍ତ୍ରରେ ଟେ ଲାଗଇ ଭୋଗ
କାହାକୁ ଭୋଗ ଦେଇ କେବା ପାଇଁ । କେଉଁ ଦିଅଁ କେଉଁଠାବରେ ଥାଇ
ଯେବେ ମୋ ଠାବରେ ସୁଦୟା ଥିବ । ଏଥି ତତ୍ତ୍ୱ ମୋତେ କହିଦେବ ।
ଶ୍ରୀହରି କହନ୍ତି ଶୁଣ ଅର୍ଜୁନ । କହିବା ତୋତେ ଏ ବିଧି ବିଧାନ ॥
କରନ୍ୟାସ ଏ ଅଙ୍ଗୁଷ୍ଠି ତର୍ଜନୀ । ମଧ୍ୟ ଅନାମିକା କନିଷ୍ଠା ଘେନି ।
ଅଠାଇଶକ୍ଷର ମନ୍ତ୍ର ଏଥିର । ମୂର୍ଦ୍ଧେ ଉଚ୍ଚାରେ ଏ ଚାରିକି ପାର ॥
ଅଙ୍ଗନ୍ୟାସ ତୋତେ କହିଣ ଦେବା । ହୃଦୟ ଶିରଶିଖା ଛୁଆଇବା ॥
ନେତ୍ର କବଚାସ୍ତ୍ର ଏ ପାଞ୍ଚ କର । ସେହି ମନ୍ତ୍ରାଦି ଏ ସ୍ଥାନାଦି ଧର ॥
ଭୂତଶୁଦ୍ଧି ଷଟ୍‌ଚକ୍ରାଦି ନ୍ୟାସି । ଆତ୍ମାଶୁଦ୍ଧିରେ ମନ୍ତ୍ରମାନେ ମିଶି ॥
ବାହାର ଭିତର ମାତୃକା ଦୁଇ । ତାକୁ ଚିହ୍ନିଲେ ନିର୍ମଳ ହୁଅଇ ॥
ଷୋଡ଼ଶୋପଚାର ପୂଜାହିଁ କଲେ । ଦିଅଁ ବଶହୋଇ ମନ୍ତ୍ର ପଢ଼ିଲେ ॥
ଗୋପାଳମନ୍ତ୍ରରେ ଲାଗଇ ଭୋଗ । ତୋତେ କହିଲି ଏ ଜ୍ଞାନସଂଯୋଗ ॥
ଜଗନ୍ନାଥ ନାମ ଚାରି ଅକ୍ଷର । ଚାରିଅକ୍ଷର ପାର୍ଥ ଚାରି ଠାକୁର ॥
ଚାରିଠାକୁରଙ୍କ କହିବା ନାମ । ସୁଦର୍ଶନ ସୁଭଦ୍ରା ବଳରାମ ॥
କଳାଶ୍ରୀମୁଖ ନାମ ଜଗନ୍ନାଥ । ଏ ଚାରିଅକ୍ଷର ବ୍ୟାପିଛି ଜଗତ ॥

ଜଅ ଅକ୍ଷର ଜଗତ ଘୋଟିଛି । ଜଳରୁ ସର୍ବ ଉତ୍ପତ୍ତି କରୁଛି ॥
ଦେହ ସ୍ଥୂଳକୁ ଏ ବୋଲି ସଂସାର । ଜୀବାତ୍ମାରୂପେ ଭୋଗ ନିରନ୍ତର ॥
ସ୍ଥୂଳ ଆକାର ଏ ବୋଲି ଦେହକୁ । ଶୂନ୍ୟ ଅଣାକାର ବୋଲି ମନକୁ ॥
ବ୍ରହ୍ମାଣ୍ଡଯାକ ଏ ବହନ୍ତି ଶିରେ । ଅନନ୍ତ ନାମଟି ବୋଲି ତାହାରେ ॥
ସେହିଟି ଅଟଇ ଷୋଳ ନୟନ । ଷୋଳ ନାମଟି ସେହି ବୋଲି ଘେନ ॥
ଆହୁରି କହିବା ତୋତେ ଅର୍ଜୁନ । ଚନ୍ଦ୍ର ସୂର୍ଯ୍ୟଙ୍କର କଳାବିଧାନ ॥
ବତିଶ କଳା ଚନ୍ଦ୍ର ସୂର୍ଯ୍ୟ ଘେନି । ଚବିଶ କଳାଟି ଗାୟତ୍ରୀ ପୁଣି ॥
ଗାୟତ୍ରୀ ଚବିଶ ବ୍ରହ୍ମାଣ୍ଡ ହୋଇ । ଉତ୍ପତ୍ତି ପ୍ରଳୟ କରନ୍ତି ସେହି ॥
ବାକି ଆଠ କଳା ରହିଲା ଯହିଁ । ଆଠ ବ୍ରହ୍ମାଣ୍ଡ ସେ କହିବା ତହିଁ ॥
ମୂଳକମଳରେ କର ବିଶ୍ରାମ । ପି ଭି ଇ ସୁ ଗୁରୁ କଳାଙ୍କ ନାମ ॥
ଊର୍ମ୍ମ ଧୂର୍ମ୍ମ ଜ୍ୟୋତି ଜ୍ୱାଳାଟି ସେହି । ଏହା ଭେଦିଲେ ଦେବଲୋକେ ଯାଇ ॥
ନିଦ୍ରା ଆହାର ବାୟୁ ମଇଥୁନ । ଗୁରୁ କଳା ଏହି ଦେହ ବିଧାନ ॥
ଚବିଶ ଆଠରେ ବତିଶ ହେଲା । ଅଷ୍ଟାଙ୍ଗ ଯୋଗଟି ସେ ଆଠ କଳା ॥
ଚବିଶ ଆଠରେ ବତିଶ ଭୋଗ । ସର୍ବଦା ଥାଇ ଏ ଦେହେଁ ସଂଯୋଗ ॥
ଏବେ କହିବା ଗୁରୁଅକ୍ଷର କଥା । ଜ ଅକ୍ଷରଟି ଜଗତକରତା ॥
ଗୁ ଅକ୍ଷରଟି ସେ ବେଦବିପ୍ରପତ୍ତ । ଶଙ୍ଖ ଗୋକ୍ଷୀର ଶ୍ୱେତ ତାଙ୍କ ମୂର୍ତ୍ତି ॥
ଶ କ୍ଷରର ଯେ ମହିମା ପୁଣ । କହିଦେବା ତୋତେ ଶୁଣ ଅର୍ଜୁନ ॥
ଗ ଯେ ଗଗନମାର୍ଗ ଶୂନ୍ୟ ସେହି । ଜ୍ଞାନ ପ୍ରକାଶ ତାହାଠାରୁ ହୋଇ ॥
କର୍ମ ଧର୍ମ ବାହ୍ୟଶୁଦ୍ଧି ବିଗ୍ରହ । ଶୂନ୍ୟ କରତା ଭେଦେ ସବୁଠାରେ ॥
ଶ ସୁଦର୍ଶନ ଯେ ମନ ସ୍ୱରୂପ । ଭୂମି ମଧ୍ୟେ ଦଶ ମିଶି ସେ ଗୋପ୍ୟ ॥
ତୋ ଅଙ୍ଗ ଅକ୍ଷରୁ ଭଜିଲେ ପାଇ । ତୋତେ ଯେ ଉପଦେଶ ଦେଲି କହି ॥
ଏବେ କହିବା ଯେ ନାମ ଅକ୍ଷର । ଏମନ୍ତ ମହିମା ଅଟେ ତାହାର ॥
ଆଦ୍ୟଶକ୍ତି ଯୋଗମାୟା ବୋଲାଇ । ନାସ୍ତି ଆସ୍ତିରେ ସଂସାର କରଇ ॥
ନାମ ଭଦ୍ରା ଯେ ରଜଗୁଣଯୁକ୍ତ । ନାଭିକମଳୁଁ ବ୍ରହ୍ମା ହେଲେ ଜାତ ॥
ସେ ପୁଣ ଜଗତ ଜାତ କରଇ । ପ୍ରଳୟ କାଳେ ସର୍ବ ସଂହରଇ ॥

ଅକାର ମହିମା କହିବା ଏବେ । ଆଣୁ ମନ୍ଦାକ୍ରାନ୍ତା ଯା ପାଦେ ଧେବେ ॥
ସ୍ଥୂଳ ଅସ୍ଥି ସ୍ଥିତ ନାହିଁ ତାହାର । ସ୍ତମ୍ଭୀଭୂତେ ଚତୁର୍ଦ୍ଦଶ ଆବୋର ॥
ଧ୍ୟାନଧାରଣା ଲୟ ପୂର୍ଣ୍ଣ କେତେ । ବେଦପୁରାଣ କହିଅଛୁ ଯେତେ ॥
ରାଧିକା ହ୍ଲାଦିକା ବେଷ୍ଟ ପାଶର । ମଧ୍ୟେ ବିଜେ ମୋହନ ବେଣୁଧର ॥
ଦାରୁ ମଧ୍ୟେ ରୂପ ମଧ୍ୟେ ବହ୍ଲାର । ବିକୂଟ କାଲନ୍ଦୀ ବଟମୂଳର ॥
ତ୍ରିଭ୍ ଅକ୍ଷର ନାମ ତ୍ରିଭ୍ ରୂପ । ସିଂହାସନେ ଯୋଗମ୍ବାରେ ଗୋପ୍ୟ ॥
ଗରୁଡ଼ସ୍ତମ୍ଭ ପାଶେ ଥାଇ ଦେଖ । ଦର୍ଶନ ହୁଅଇ କଳାଶ୍ରୀମୁଖ ॥
ଅର୍ଜୁନ କୃଷ୍ଣଚରଣେ ପଡ଼ିଲା । ମନୁ ସଂଶୟ ସକଳ ଛାଡ଼ିଲା ॥
ଆଶ୍ରେ କରଣ ପାଦ ଅରବିନ୍ଦ । ଧ୍ୟାଇଣ କହଇ ଅଚ୍ୟୁତାନନ୍ଦ ॥

ଇତି ଶ୍ରୀ ଜ୍ଞାନପ୍ରଦୀପଗୀତାୟାଂ ସୁପନିଷସୁ ବନ୍ଧ୍ରବିଦ୍ୟାୟାଂ
ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ନାମ
ଦ୍ୱାଦଶୋଽଧ୍ୟାୟଃ ।

---

## ତ୍ରୟୋଦଶ ଅଧ୍ୟାୟ ।

ଶ୍ରୀକୃଷ୍ଣ ଚରଣେ ଅର୍ଜୁନ ପଡ଼ିଣ ପୁଛଇ ଯେ ଜ୍ଞାନସାର ।
କେମନ୍ତ ପ୍ରକାରେ ଶରୀର ହୋଇଛି କହିବା ଏଥି ବିଚାର । ୧ ।
ଉଦ୍ଧ୍ୱପୁର ପୁଣ ଚଉଦଭୁବନ ଦେହରେ କାହିଁ ରହିଛି ।
ପ୍ରତି ପ୍ରତି କରି କହ ମହାପ୍ରଭୁ ସଂଶୟ ନ ରହୁ କିଛି । ୨ ।
ଶ୍ରୀହରି କହନ୍ତି ଶୁଣ ଧନଞ୍ଜୟ କହିବା ଏଥି ବିଚାର ।
ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ ପଞ୍ଚଭୂତ ଏ ଶରୀର । ୩ ।
କଟିଠାରୁ ପାଦତଳ ପର୍ଯ୍ୟନ୍ତେ ପାତାଳପୁର ବୋଲଇ ।
ଏଥି ମଧ୍ୟେ ସପ୍ତପାତାଳ ଅଛଇ ତାହା ଦେବା ତୋତେ କହି । ୪ ।
ନାଭିକମଳରୁ କଣ୍ଠ ପର୍ଯ୍ୟନ୍ତେ ଏହିଟି ମର୍ତ୍ତ୍ୟଭୁବନ ।

କଣ୍ଠଠାରୁ ଶିର ଶିଖାଯାଏ ସ୍ୱର୍ଗପୁର ଏ ବୋଲି ଅର୍ଜୁନ । ୫ ।
ଏଥିମଧ୍ୟେ ସପ୍ତପୁର ରହିଅଛି ତାହା କହିଦେବା ତୋତେ ।
ତିନପୁର ମଧ୍ୟେ ଚଉଦଭୁବନ ରହିଛି ଯେତେକେ ଗୁପତେ । ୬ ।
ପାଦତଳକୁ ଯେ ପାତାଳ କହନ୍ତି ପାପୁଲି ନାମ ବିତାଳ ।
ଜଙ୍ଘକୁ ତଳାତଳ ବୋଲି କହନ୍ତି ପିଣ୍ଡି ନାମ ରସାତଳ । ୭ ।
ଗୁହ୍ୟକୁଟି ମହାତଳ କହି ଇନ୍ଦ୍ର ଅତଳ ନାମ କହିଣ
ତଳପେଟ ନାମ ସୁତଳ ବୋଲାଇ ତୋତେ ଦେଲି ପାର୍ଥ କହି । ୮ ।
ଏଥିଉତ୍ତାରେ କହିବା ତୋତେ ଶୁଣ ସପ୍ତଲୋକର ବିଧାନ ।
ପ୍ରତିପ୍ରତି କରି କହୁଅଛି ପାର୍ଥ ରଖ ହେତୁ କରି ମନ । ୯ ।
ନାଭିସ୍ଥଳକୁ ଯେ ଭୂଲୋକ କହଇ ଭୁବଲୋକ ହୃଦ ଜାଣ ।
କଣ୍ଠସ୍ଥଳ ମହଲୋକ ବୋଲାଇଟି ପୁଣ ଜନଲୋକ ଶୁଣ । ୧୦ ।
ତପଲୋକ ସ୍ଥାନ ନାସିକା ବୋଲାଇ ସତ୍ୟଲୋକ ବୋଲି ତାହା ।
କପାଳକୁ ପୁଣି ସ୍ୱର୍ଗଲୋକ ବୋଲି ଶୁଣ ପାର୍ଥ ହୋଇ ସ୍ନେହା । ୧୧ ।
ଚଉଦଭୁବନ ଏହିଟି ଅର୍ଜୁନ କହିଦେଲି ତୋତେ ସତ୍ୟ
ଏଥିପରେ ଅଛି ଗୋଲକଭୁବନ ଯହିଁ ନିତ୍ୟ ମହାନିତ୍ୟ । ୧୨ ।
ପରମ ନିତ୍ୟଯେନି ଏହୁ କହ୍ୟଟି କିନିତ୍ୟ ଏହି ବୋଲଇ ।
ଶୁଣିକରି ପାର୍ଥ ବୋଲେ ମହାପ୍ରଭୁ କହ ସଂଶୟ ଫିଟାଇ ॥
ଶ୍ରୀକୃଷ୍ଣ ବୋଲନ୍ତି ଶୁଣସର୍ବସାଚ ଅନନ୍ତର ସହସ୍ରଫଣୀ ॥
ସେହି ସହସ୍ରଫଣୀ ତ୍ରିକୋଣ ସଂଜ୍ଞାତ ତାହା କହିଦେବା ପୁଣି ।
ନିତ୍ୟବୋଲି ଯାହା ପ୍ରଥମ କୋଣଟି ଦକ୍ଷିଣ ନୟନ ତୋର ।
ଶ୍ରୀ ବୋଲି ତହିଁ ବଳେକ ବସିଲ୍ୟ ବଳଭଦ୍ର ନାମ ତାର । ୧୩ ।
ମହାନିତ୍ୟ ବୋଲି ଦ୍ୱିତୀୟ କୋଣଟି ସେ ତୋର ବାମ ନୟନ ।
ଶ୍ରୀ ବୋଲି ତହିଁ ବଳେକ ବସିଛି ସୁଭଦ୍ରା ତାନାମ ଶୁଣ ॥
ପରମ ନିତ୍ୟ ବୋଲି ଯାହା କହିବ ଏ ବେନି ମଧ୍ୟେ ରହିଲା ।
କ୍ଲୀଂ ବୀଜ ହେନି ଜଗନ୍ନାଥ ରୂପ ତ୍ରିକୋଣଟି ପ୍ରକାଶିଲା ॥

କହେ ଧନଞ୍ଜୟ ଶୁଣ ମହାପ୍ରଭୁ ବିଗାଜ ହେବୁ ଶୁଣିଲି ।
କୋଟିଜନ୍ମ ପାପ କ୍ଷୟ ଗଲା ମୋର ଦୁରିତମାନ ଛେଦଲି ॥
ମୁଁ ଯେବେ ପରଗୁରୁକ ଭୃତ୍ୟ ତୋର ଭୃତ୍ୟଙ୍କନେ ଦୟା କର ॥
ଧ୍ରୁବମଣ୍ଡଳ ଯେ ଶ୍ରୀହାଟପାଟଣା କହବା ହେବେ ବସ୍ତାର । ୧୯ ।
କହନ୍ତି ହର ଶୁଣ ପଣ୍ଡୁକୁମର ଧ୍ରୁବମଣ୍ଡଳ ମହିମା ।
ସଚରାଚର ପଶି ମିଶି ରହୁଛି କେହ ନ ଜାଣେ ଏସୀମା । ୨୦ ।
ଅମରଭୁବନ ଅଟଇ ଏ ସ୍ଥାନ ଧ୍ୱନୀ ଶୁଭୁଅଛି ଯହିଁ ।
ସେ ଧ୍ୱନି ଶୁଣିଲେ ଅମର ହୋଇବୁ ଦେଲି ତୋତେ ପାର୍ଥ କହି । ୨୧ ॥
ଶ୍ରୀହାଟପାଟଣା ଅଛି ଅଗୋଚର ଦେବଲୋକଙ୍କର ହାଟ ।
ମନ ଜ୍ଞାନୀ ଯୋଗୀ ସେ ପଥେ ଗମନ୍ତି ଅନ୍ୟ ନ ପାବନ୍ତି ବାଟ । ୨୨ ॥
ତ୍ରିବେଣୀ ନଦୀ ସେହିଠାରେ ବହୁଛି ହାଟପାଟଣାକୁ ଭେଦ ।
ତହିଁ ପଶିଲେ ତୁ ନିର୍ମଳ ହୋଇବୁ ପାପ ପଳାଇବୁ ଛେଦ । ୨୩ ।
ତୋହର ଦେହ ଦେଖ ଜ୍ଞାନଭଣ୍ଡାର ଆଉ କ କହିବ ତୋତେ ।
ଚଳେ କରମନଜ୍ଞାନ ରେଚନାରେ ପୂରିଅଛି ସର୍ବଭୂତେ । ୨୪ ।
ନିଶ୍ଚେ ସଦଗୁରୁ ଅନ୍ୱେଷିଲେ ଯାଇ ତହିଁ ଜ୍ଞାନର ବହର ।
କହିବାକୁ ଯାହା ବଚନେ ନ ଆସେ ଦେଖିବାକୁ ଅଗୋଚର । ୨୫ ॥
ଶାସ୍ତ୍ର ଗୋଚରରେ ସମସ୍ତେ କହନ୍ତି କଥା ପଟାନ୍ତର ଦେଇ ।
ସ୍ଥୂଳ ସୂକ୍ଷ୍ମ କେତେ ଜୀବକୁ ଅଜିବ କାହିଁ ଥାଇ କାହିଁ ପାଇ । ୨୬ ।
ଲୀଳା କରୁଅଛି କୁହୁକ ଲଗାଇ ମାୟାକୁ ବେଷ୍ଟିତ କରି ।
ଜଗତଯାକ ଯେ ପୂରି ମିଶିଅଛି ନ ପାରନ୍ତି ବାରଧରି । ୨୭ ।
ଅଣସାଧନା ବାଟରେ ଷଡ଼ୁ ଭେଟ ଯେବେ ଗୁରୁଆଜ୍ଞା ହୋଇଁ ।
କୋଟି କୋଟି ଶାସ୍ତ୍ର ସ୍ମୃତି ଶୁଣିଲେ ଜ୍ଞାନଗୋଚର ନୁହଇ । ୨୮ ।
ଶାନ୍ତ ଆତ୍ମା ଶୁଦ୍ଧ ନିରମଳ ଚିତ୍ତ ହେଲେ ସେ ମୁଁ ଏକରୂପ ।
ଭକ୍ତଜନ ମୋତେ ନିରତେ ଦେଖନ୍ତି ଅଭକ୍ତଜନେ ମୁଁ ଗୋପ୍ୟ । ୨୯

ଶ୍ରୀକୃଷ୍ଣ ବଚନ ଶୁଣିଣ ଅର୍ଜୁନ କୃତକୃତ ଭାବ ହୋଇ ।
ପାଦପଦ୍ମେ ଆଶା କରିଣ ଭରସା ଅଚ୍ୟୁତଦାସ କହଇ । ୩୦ ।

ଇତି ଶ୍ରୀ ଜ୍ଞାନ ପ୍ରଦୀପଗୀତାସ୍ୟୁଂ ସୂପନିଷସ୍ତୁ ବ୍ରହ୍ମବିଦ୍ୟାସ୍ୟାଂ
ଶ୍ରୀକୃଷ୍ଣଅର୍ଜୁନ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।
ସମାପ୍ତୋଽୟଂ ଗ୍ରନ୍ଥଃ ।

---

କଟକ ଏଡଓ୍ୱାର୍ଡ ପ୍ରେସରେ ଶେଖ୍ ନଜର ମହମ୍ମଦ କର୍ତ୍ତୃକ ମୁଦ୍ରିତ । ୧୯୧୦

# ବିଜ୍ଞାପନ ।

ନିମ୍ନାଙ୍କିତ ପୁସ୍ତକମାନ କଟକର ପ୍ରଧାନ ୨ ପୁସ୍ତକଦୋକାନରେ ବିକ୍ରୟ ହୁଏ ।

| | |
|---|---|
| କବିତାକଲାପ | ଟ ୦ । |
| କବିତାକଲାପ ୨ୟ ଭାଗ | ଟ ୦ ୶ |
| ମାତିରତ୍ନହାର | ଟ ୦ / |
| ପାଟୀଗଣିତ | ଟ ୦ ୶ |
| ମାନସାଙ୍କ | ଟ ୦ ୶ |
| ବର୍ଣ୍ଣବୋଧକ | ଟ ୦ / |
| ଭୂଗୋଳସାର | ଟ ୦ ୶୬ |
| ମହାମେଳା ଦର୍ଶନ | ଟ ୦ । |
| ସଙ୍ଗୀତ ସୁଧାନିଧି | ଟ ୦ । |
| ପ୍ରାକୃତକେରଳ | ଟ ୦ । |
| ଏକାଦଶୀମାହାତ୍ମ୍ୟ | ଟ ୦ ୳ |
| ଠଣ୍ଠଣକଥା | ଟ ୦ । |
| ଶୋଭାବତୀ | ଟ ୦ ୷ |
| ମାନମଞ୍ଜରୀ | ଟ ୦ ୶ |
| ନଳଚରିତ | ଟ ୦ ୶୬ |
| ଦେଉଳତୋଳା | ଟ ୦ ୶୬ |
| ଉଦ୍ଯାନଦୀପିକା | ଟ ୦ ୶୬ |
| ଗୃହଶାନ୍ତିବୋଲ | ଟ ୦ ୶ |
| ଜଣାଣସଂଗ୍ରହ | ଟ ୦ ୶ |
| ଦୂତବାମନ | [illegible] |
| ଖୁନ୍ଟୁକୁଣି | ଟ ୦ ୶ |
| ଟୀକା ରାମାୟଣ (ବଡ଼) | ଟ ୦ । |
| ଛାପାଯନ୍ତ୍ର | ଟ ୦ ।୶ |

| | |
|---|---|
| ଶ୍ଳୋକରତ୍ନାବଳୀ | ଟ ୦ ୶ |
| ,, ୨ୟ ଭାଗ | ଟ ୦ ୶ |
| କଟକଦର୍ଶନ | ଟ ୦ ୶ |
| ଲାଟଦର୍ଶନ | ଟ ୦ / |
| ଜଗବନ୍ଧୁ ଚଉତିଶା | ଟ ୦ / |
| ଭକ୍ତସମ୍ବଳ | ଟ ୦ / |
| ଅର୍ଘ୍ୟବନ୍ଧାପନୀ | ଟ ୦ / |
| ହରଅତନ୍ତ | ଟ ୦ / |
| ବର୍ଣ୍ଣବିବେକ ଚନ୍ଦ୍ରିକା | ଟ ୦ / |
| ଶିବଧନୁର୍ଭଙ୍ଗ | ଟ ୦ / |
| ବାଟଓଷାକଥା | ଟ ୦ / |
| ଗଜେନ୍ଦ୍ରମୋକ୍ଷଣ | ଟ ୦ / |
| ରାଧାକୃଷ୍ଣାଷ୍ଟମୀବ୍ରତକଥା | ଟ ୦ / |
| ଫେର୍ ଫୁଟୁର୍ | ଟ ୦ ୲୬ |
| ସୃଷ୍ଟିସମ୍ଭୃତ ପୁରାଣ | ଟ ୦ ୶୬ |
| ସୁବାସକୁସୁମ | ଟ ୦ ୲୬ |
| ଶ୍ରୀମଦ୍‌ଗୀତାସାର | ଟ ୦ ୶୬ |
| ମଧୁସାଦୁ ଓ ହରଶ୍ଲୋକେର | ଟ ୦ / |
| ସୂର୍ଯ୍ୟମାହାତ୍ମ୍ୟ | ଟ ୦ /୬ |
| ଶବଦାବି ଖଣ୍ଡ | ଟ ୦ / |
| ଗୋପାଳ ପୂଜା ପଦ୍ଧତି | ଟ ୦ ୶ |
| ଅଙ୍କର ଶିକ୍ଷା | ଟ ୦ / |